# ଲକ୍ଷ୍ମୀନାରାୟଣ ସାହୁ



ରଚୟିତା :-
ଶ୍ରୀ ନରସିଂହ ସାହୁ

ଓଡ଼ିଶା ସାହିତ୍ୟ ଏକାଡେମୀ

# ଲକ୍ଷ୍ମୀନାରାୟଣ ସାହୁ

ରଚୟିତା :
**ଶ୍ରୀ ନରସିଂହ ସାହୁ**

ପ୍ରକାଶକ :
**ଓଡ଼ିଶା ସାହିତ୍ୟ ଏକାଡେମୀ**
ଭୁବନେଶ୍ୱର–୭୫୧୦୧୪

ପ୍ରଥମ ପ୍ରକାଶ : ୧୯୯୨

ମୁଦ୍ରଣ :
**ମହାବୀର ପ୍ରିଣ୍ଟର୍ସ**
ଏରୋଡ୍ରମ ଏରିଆ
ଭୁବନେଶ୍ୱର-୯

ମୂଲ୍ୟ : ତେଇଶ ଟଙ୍କା

# LAXMINARAYAN SAHU

Written by :
**Sri Narasingh Sahu**

Published by :
**Orissa Sahitya Akademi**
Bhubaneswar-751014

**First Edition - 1992**

Printed at :
**Mahavir Printers**
Aerodrome Area
Bhubaneswar-9

Price : **Twenty-Three Rupees**

# ଅଗ୍ରଲେଖ

ଓଡ଼ିଆ ସାହିତ୍ୟର ବିଭିନ୍ନ ବିଭବରେ ପ୍ରତିଷ୍ଠା ଓ ସୁନାମ ଅର୍ଜନ କରିଥିବା ବିଶିଷ୍ଟ ସାହିତ୍ୟିକମାନଙ୍କ ଜୀବନୀ ଓ ସାହିତ୍ୟ-କୃତି ସଂବଳିତ ମନୋଗ୍ରାଫ୍ର ସଂକଳନ ଓ ପ୍ରକାଶନ ଓଡ଼ିଶା ସାହିତ୍ୟ ଏକାଡେମୀର ଏକ ପ୍ରମୁଖ କାର୍ଯ୍ୟ ଏବଂ ତଦନୁସାରେ 'ଲକ୍ଷ୍ମୀନାରାୟଣ ସାହୁ' ଶୀର୍ଷକ ମନୋଗ୍ରାଫ୍‌ଟି ପ୍ରକାଶିତ ହୋଇଛି ।

ସମାଜ-ସେବକ ଓ ସାହିତ୍ୟ-ସାଧକ ସ୍ୱର୍ଗତ ଲକ୍ଷ୍ମୀନାରାୟଣ ସାହୁ ଓଡ଼ିଶାରେ ସର୍ବତ୍ର ସୁପରିଚିତ । ଏପରି ସ୍ୱଜାତିପ୍ରେମୀ, ସ୍ୱଦେଶପ୍ରେମୀ, ସ୍ୱାଭିମାନୀ, ପରୋପକାରୀ ବ୍ୟକ୍ତି ବିରଳ କହିଲେ ଚଳେ । ତାଙ୍କର ଓଡ଼ିଶା ଓ ଓଡ଼ିଆ ପ୍ରେମର ପଟାନ୍ତର ନାହିଁ । ପ୍ରତ୍ୟେକ ଓଡ଼ିଆ ପ୍ରାଣରେ ସେ ଆତ୍ମ-ପ୍ରତ୍ୟୟ ଓ ଆତ୍ମମର୍ଯ୍ୟାଦାର ବୀଜ ବପନ କରିବାକୁ ଆପ୍ରାଣ ଚେଷ୍ଟା କରିଥିଲେ । ଉଦାରତା ଓ ମାନବିକତାର ଜୀବନ୍ତ ପ୍ରତୀକ ଥିଲେ ଲକ୍ଷ୍ମୀନାରାୟଣ । ଛୁଆଁ-ଅଛୁଆଁ ଭେଦଭାବ ଓ ସଂକୀର୍ଣ୍ଣ ମନୋଭାବ ତାଙ୍କର ଆଦୌ ନ ଥିଲା । ସବୁ ଧର୍ମ ଓ ସମ୍ପ୍ରଦାୟ ପ୍ରତି ଉଦାର ମନୋଭାବ ତାଙ୍କର ମହାନ୍ ବ୍ୟକ୍ତିତ୍ୱର ପରିଚାୟକ ।

ସେ ଯେପରି ଥିଲେ ଜ୍ଞାନ-ତପସ୍ୱୀ, ସେହିପରି ଥିଲେ ଜଣେ କର୍ମଯୋଗୀ । ସେ ଥିଲେ ଜଣେ ସାମାଜିକ ବିପ୍ଳବୀ ମଧ୍ୟ । ଜନସେବା ଥିଲା ତାଙ୍କର ଧର୍ମ ଓ କର୍ମ । ଦଳିତ ଓ ଅବହେଳିତଙ୍କ ଉନ୍ନତି ପାଇଁ ସେ ନିରନ୍ତର ବ୍ୟାକୁଳ ଥିଲେ ଏବଂ ସେ ଦିଗରେ ଥିଲେ ଅବିରତ ଉଦ୍ୟମରତ । ଅନ୍ୟାୟ, ଅତ୍ୟାଚାର ଓ କୁସଂସ୍କାର ବିରୁଦ୍ଧରେ ସେ ଆଜୀବନ ସଂଗ୍ରାମ କରି ଆସିଛନ୍ତି । ଏପରି ସାଧୁ, ସ୍ନେହୀ ଓ ଦରଦୀ ହୃଦୟ କ୍ୱଚିତ୍ ଦେଖିବାକୁ ମିଳେ ।

କର୍ତ୍ତବ୍ୟନିଷ୍ଠ, ସତ୍‌ପଥୀ, ନିର୍ଭୀକ ଲକ୍ଷ୍ମୀନାରାୟଣ କେବେ ଜୀବନରେ ହାର ମାନି ନାହାଁନ୍ତି । ତାଙ୍କର ନିଷ୍ଠା ଓ ଅଧ୍ୟବସାୟ ବଳରେ ସବୁଠାରେ ଓ ସବୁ କ୍ଷେତ୍ରରେ ସେ ବିଜୟଶ୍ରୀ-ମଣ୍ଡିତ ହୋଇପାରିଛନ୍ତି ।

ସେ ବହୁ ସମାଜସେବା ସଗଠନ, ଶ୍ରମିକ ସଗଠନ ଓ ସାହିତ୍ୟ ସଙ୍ଗଠନ ସହିତ ଓତପ୍ରୋତ ଭାବରେ ଜଡ଼ିତ ରହି ସକ୍ରିୟ କାର୍ଯ୍ୟରତ ଥିଲେ । ଭାରତ ସେବକ ସମିତିର ସଭ୍ୟଭାବରେ ସେ ସମ୍ମାନିତ । ଓଡ଼ିଶା ସାହିତ୍ୟ ଏକାଡେମୀର ସେ ସଭାପତି ଆସନ ଅଳଂକୃତ କରିଥିଲେ ।

ମାନବବାଦୀ ଚିନ୍ତାଧାରା ଓ ଭାବର କମନୀୟତାରେ ତାଙ୍କର ସାହିତ୍ୟକୃତି ଋଦ୍ଧିମନ୍ତ ଓ ପୁଷ୍ଟକ । ତାଙ୍କର ସାହିତ୍ୟ ସହଜବୋଧ୍ୟ, ହୃଦୟଗ୍ରାହୀ ଓ ସାର୍ବଜନୀନ । ତାଙ୍କର ସ୍ୱାଧୀନ ଚିନ୍ତାଧାରା ଓ ଚେତନାର ଅଭିବ୍ୟକ୍ତି ଓ ପରିପ୍ରକାଶ ଘଟିଛି ତାଙ୍କର ସାରସ୍ୱତ ସୃଷ୍ଟି ମଧ୍ୟରେ ।

ଓଡ଼ିଆ ସାହିତ୍ୟର ବିଭିନ୍ନ ବିଭବ—କବିତା, ପ୍ରବନ୍ଧ, ରମ୍ୟରଚନା ଗଳ୍ପ, ଉପନ୍ୟାସ, ଜୀବନୀ-ସାହିତ୍ୟ, ସବୁକ୍ଷେତ୍ରରେ ସେ ଲେଖନୀ ଚାଳନା-କରି ଓଡ଼ିଆ ସାହିତ୍ୟ ଭଣ୍ଡାରକୁ ପରିପୁଷ୍ଟ କରି ଯାଇଛନ୍ତି । 'ଓଡ଼ିଶାରେ ଜୈନଧର୍ମ' ଓ 'ଦଣ୍ଡନାଟ' ଶୀର୍ଷକ ଗବେଷଣାଧର୍ମୀ ପୁସ୍ତକ ଦୁଇଟି ତାଙ୍କର ବୌଦ୍ଧିକତା ଓ ଜ୍ଞାନାନୁସନ୍ଧିତ୍ସାର ଜ୍ୱଳନ୍ତ ପରିପ୍ରକାଶ । ତାଙ୍କର ଆତ୍ମଜୀବନୀଗ୍ରନ୍ଥ 'ମୋ ବାରବୁଲା ଜୀବନ' ଓଡ଼ିଆ ସାହିତ୍ୟରେ ଏକ ଅନନ୍ୟ ସୃଷ୍ଟି । ଇଂରାଜୀ ଓ ବଙ୍ଗଳାରେ ରଚିତ ତାଙ୍କର ବହୁ କବିତା ତାଙ୍କର ଉକ୍ତ ଭାଷାରେ ଗଭୀର ବ୍ୟୁତ୍ପତ୍ତିର ପରିଚାୟକ । ତାଙ୍କର ସାମ୍ବାଦିକ ଜୀବନ ମଧ୍ୟରେ ସେ 'Star of Utkal' ଓ ଇଂରାଜୀ ମାସିକ Baitarani ଓ ପୁରୀରୁ ପ୍ରକାଶିତ 'ସହକାର' ପତ୍ରିକାର ସୁଯୋଗ୍ୟ ସଂପାଦକ ଥିଲେ । ଓଡ଼ିଆ ସାହିତ୍ୟ, ସଂସ୍କୃତି ଓ ସମାଜ କ୍ଷେତ୍ରରେ ତାଙ୍କର ମହନୀୟ ଅବଦାନ ପାଇଁ ସେ ବିଶେଷ ରୂପେ ସମ୍ମାନିତ । ଭାରତ ସରକାରଙ୍କଠାରୁ 'ପଦ୍ମଶ୍ରୀ', ଉତ୍କଳ ବିଶ୍ୱବିଦ୍ୟାଳୟରୁ ଡ଼ି. ଲିଟ୍, ଆନ୍ଧ୍ର ଇତିହାସ ପ୍ରତ୍ନତତ୍ତ୍ୱ ସମିତିରୁ ଭାରତ-ତୀର୍ଥ, ପୃଥିବୀ ଜୈନମିଶନରୁ 'ଇତିହାସ ରତ୍ନ', ଗୀତାରେ ବ୍ୟୁତ୍ପତ୍ତି ଯୋଗୁ 'ତତ୍ତ୍ୱନିଧି', ବଙ୍ଗଳା ସାହିତ୍ୟରେ ନିପୁଣତା ଯୋଗୁ 'ବିଦ୍ୟାରତ୍ନ' ଉପାଧିରେ ସେ ଭୂଷିତ

ହୋଇଥିଲେ । ଏ ଅବସରରେ ଏହି ଉତ୍ସର୍ଗୀକୃତ ଜୀବନର ସଦ୍‌ଗତି କାମନା କରିବା ସଙ୍ଗେ ସଙ୍ଗେ ତାଙ୍କର ଅମର ଆତ୍ମାପ୍ରତି ମୋର ବିନମ୍ର ଶ୍ରଦ୍ଧାଞ୍ଜଳି ଅର୍ପଣ କରୁଛି ।

ଏହି ମନୋଗ୍ରାଫ୍‌ର ରଚୟିତା ଅଧ୍ୟାପକ ଶ୍ରୀ ନରସିଂହ ସାହୁ ତାଙ୍କର ଏକାନ୍ତ ଆତ୍ମୀୟ ଓ ଲକ୍ଷ୍ମୀନାରାୟଣ ସାହୁ ସ୍ମୃତି ସମିତିର ସଂପାଦକ । ଲକ୍ଷ୍ମୀନାରାୟଣ ସାହୁଙ୍କ ସହିତ ତାଙ୍କର ସାନ୍ନିଧ୍ୟ ଓ ପ୍ରତ୍ୟକ୍ଷ ଅନୁଭୂତି ଏହି ମନୋଗ୍ରାଫ୍ ରଚନା ଦିଗରେ ତାଙ୍କୁ ବିଶେଷ ସହାୟକ ହୋଇଛି, ଏଥିରେ ସନ୍ଦେହ ନାହିଁ । ଲକ୍ଷ୍ମୀନାରାୟଣଙ୍କ ଜୀବନର ଏହା ଏକ ବାସ୍ତବ ପ୍ରତିଫଳନ । ଏହି ମନୋଗ୍ରାଫ୍‌ର ପ୍ରକାଶନ ଅବସରରେ ଶ୍ରୀ ସାହୁଙ୍କୁ ମୁଁ ସାଧୁବାଦ ଜଣାଉଛି । ପାଠକ-ସମାଜରେ ପୁସ୍ତକଟି ଆଦୃତ ହେବ ବୋଲି ମୋର ଆଶା ଓ ବିଶ୍ୱାସ ।

ଇନ୍ଦୁଭୂଷଣ କର
ସଂପାଦକ
ଓଡ଼ିଶା ସାହିତ୍ୟ ଏକାଡେମୀ

"ତିଳେତିଳେ ବଳି ଦେଇ ଯେ ଜୀବନ
ଜଳିଯାଏ ଯେଉଁ ବଳିତା
ମରେ ଯେ ଝରଣା ମରୁଭୂମି ତୀରେ
ଜଳଧାର ଢାଳି ଢାଳି ତା'

ହସେ ଯେ ବଉଦ ବରଷି ବରଷି
ଢାଳି ଅମୃତ ଅସ୍ତ ଯେ ଶଶୀ
ସେ ଯେ ଜୀବନର କବିତା ।

ଈଶ୍ୱର ଚିତ୍ତେ, ବିଶ୍ୱର ହିତେ
ଧନ୍ୟ ଜୀବନ ବଳି ତା' ।"

—କୁଞ୍ଜବିହାରୀ ଦାଶ

# ସୂଚୀପତ୍ର





## ॥ ଏକ ॥

# ସେବକ ଲକ୍ଷ୍ମୀନାରାୟଣ

ଅଦ୍ୱିତୀୟ ପ୍ରତିଭାଧାରୀ ମହାପୁରୁଷ ଦେଶ ଓ ଜାତିର କଲ୍ୟାଣ ସାଧନ ପାଇଁ, ଆଦର୍ଶ ସ୍ଥାପନ ପାଇଁ ବିଶ୍ୱପିତାଙ୍କ ଦ୍ୱାରା ପ୍ରେରିତ ହୋଇ-ଥାଆନ୍ତି । ସେମାନଙ୍କ କାର୍ଯ୍ୟକଳାପ, ଆଦେଶ, ଉପଦେଶ, ସେବା, ଯତ୍ନ, ମହିମା, ମହତ୍ତ୍ୱ ଦ୍ୱାରା ଜନସମାଜ ବହୁ ଭାବରେ ଉପକୃତ ହୁଅନ୍ତି, ଉଦ୍‌ବୁଦ୍ଧ ହୁଅନ୍ତି । ସେମାନଙ୍କ ଉନ୍ନତ ଜୀବନର ପବିତ୍ର ଚିନ୍ତାଧାରାରେ ସମସାମୟିକ ସମାଜ ସ୍ୱଚ୍ଛ, ପୂତ, ନିର୍ମଳ ହୋଇଯାଏ । ଯେଉଁ ବିରାଟ ତ୍ୟାଗର ମହନୀୟ ଆଦର୍ଶରେ ଭାରତ ଇତିହାସ ଉଦ୍‌ଭାସିତ, ଯେଉଁ ଅନୁପମ ଉଦାରତାରେ, ମାନବିକତାରେ ଭାରତର ଜନଜୀବନ ପରିପୂରିତ, ସେହି ଆଦର୍ଶର ଜୀବନ୍ତ ପ୍ରତୀକ ଲକ୍ଷ୍ମୀନାରାୟଣ । ତାଙ୍କ ଜୀବନ-ଜ୍ୟୋତି ପ୍ରତ୍ୟେକ ପ୍ରାଣରେ ଆନ୍ଦୋଳନ ଆଣେ, ପ୍ରେରଣା, ଜାଗରଣ ଆଣେ ।

ତାଙ୍କ ଜୀବନର ଟିକିନିଖି କଥାକୁ ସେ ଅତି ବିଶ୍ୱସ୍ତ ଭାବେ 'ମୋ ବାରବୁଲା ଜୀବନ'ରେ ଲେଖିଯାଇଛନ୍ତି । ଏଡେ ଟିକିଏ ବି କୋଉଠି ଘୋଡ଼ା-ଘୋଡ଼ି ନାହିଁ ଯୋଡାଯୋଡ଼ି ନାହିଁ, ଭିଡ଼ାଭିଡ଼ି ନାହିଁ । ସମସ୍ତ କଥା—ସମସ୍ତ ତ୍ରୁଟିବିଚ୍ୟୁତି, ଦୋଷଦୁର୍ବଳତା, ଅହଙ୍କାର ଅଭିମାନ ସେ ମୁକ୍ତକଣ୍ଠରେ ସ୍ୱୀକାର କରିଛନ୍ତି । ଜୀବନର ଅନ୍ଧକାର, ଆଲୋକ ସକଳ ଦିଗ ସେ ଜଣେ ଅତି ବିଶ୍ୱସ୍ତ ବନ୍ଧୁ ଆଗରେ କହିଗଲା ଭଳି କହିଯାଇଛନ୍ତି ଟିକିଏ ବି ଦ୍ୱିଧା ନ ରଖି, ସଙ୍କୋଚ ନ ରଖି । ପୁଣି ଦୋଷତ୍ରୁଟି ପାଇଁ ଆତ୍ମସମୀକ୍ଷା କରିଛନ୍ତି । ଅନୁତାପ, ପଶ୍ଚାତ୍ତାପ କରିଛନ୍ତି । ପରେ ପୁଣି ସଚ୍ଚୋଟ ଚାଲିବାକୁ ପଣ କରିଛନ୍ତି ।

କିନ୍ତୁ ଅନ୍ଧକାରକୁ ପ୍ରକାଶ କରିଛନ୍ତି ଯେତିକି, ଆଲୋକକୁ ଲୁଗ୍ରଛ ରଖିଛନ୍ତି ସେତିକି । ମନ୍ଦ କର୍ମ ପାଇଁ ଅଶ୍ରୁ ବହୁତ; କିଂତୁ ଭଲ କର୍ମ ପାଇଁ ଗର୍ବ ଟିକିଏ ବି ନାହିଁ । ମନ୍ଦ କର୍ମର କର୍ତ୍ତା ସେ ନିଜେ, ଆଉ ଭଲ କର୍ମର କର୍ତ୍ତା ସ୍ୱୟଂ ଈଶ୍ୱର—ଏହାହିଁ ତାଙ୍କର ଧ୍ରୁବ ବିଶ୍ୱାସ ।

ପଦ୍ମଭୂଷଣ କାଳିନ୍ଦୀ ଚରଣ ପାଣିଗ୍ରାହୀ ଲକ୍ଷ୍ମୀନାରାୟଣଙ୍କୁ ଶ୍ରୀମଦ୍-ଭାଗବତର ଅବଧୂତଙ୍କ ସଙ୍ଗେ ତୁଳନା କରିଛନ୍ତି । ଅବଧୂତ କେବଳ ପ୍ରେମର ବିତରଣ ଲାଗି ଭିକ୍ଷାଥାଳ ଧରି ଦ୍ୱାରେ ଦ୍ୱାରେ ବୁଲିଛନ୍ତି । କୀଟ, ପତଙ୍ଗ, ଅଜଗର, ପକ୍ଷୀ, ସରୀସୃପ, ଏପରିକି ପିଙ୍ଗଳାବେଶ୍ୟା ଓ ସାଳଙ୍କରୀ ବ୍ରାହ୍ମଣ କନ୍ୟାକୁ ଗୁରୁ କରିଛନ୍ତି । ଲକ୍ଷ୍ମୀନାରାୟଣ ସେହିପରି ଭଳି ଦ୍ୱାରେ ଦ୍ୱାରେ ବୁଲି ସୁଖଦୁଃଖ, ଭଲମନ୍ଦ, ନିନ୍ଦାପ୍ରଶଂସା, ମାନଅପମାନର ବହୁ ଉର୍ଦ୍ଧ୍ୱରେ ରହି କେବଳ ସେବା କରିଯାଇଛନ୍ତି । ଆଉ ଆଚଣ୍ଡାଳ ବ୍ରାହ୍ମଣ ସମସ୍ତଙ୍କୁ ଗୁରୁ କରି ସମସ୍ତଙ୍କଠାରୁ ଜୀବନସାର ଖାଲି ଶିଖିଛନ୍ତି, ଶିଖିଛନ୍ତି । ଅବଧୂତ ପ୍ରେମର ପସରା ଧରି ବୁଲୁଥିଲେ । ଲକ୍ଷ୍ମୀନାରାୟଣ ସେବା, ପ୍ରେମ, ଜ୍ଞାନ ଓ ନିଷ୍ଠାର ପସରା ଧରି ଘୂରି ବୁଲୁଥିଲେ ଜୀବନସାରା । ଏସମସ୍ତର ବିଶ୍ୱସ୍ତ ପ୍ରତି-ଫଳନ ହୋଇଛି 'ମୋ ବାରବୁଲା ଜୀବନ'ରେ ।

ଲକ୍ଷ୍ମୀନାରାୟଣ ଥିଲେ ଚିରଯୌବନ, ଚିର ବସନ୍ତର ସଖା । ଜୀବନ ତାଙ୍କ ଭିତରେ ଉଚ୍ଛୁଳୁମୁଛୁଳୁ, ଯୌବନ ଭରପୂର । ତେଣୁ ସେ ସବୁବେଳେ ଉଚ୍ଛନ୍ନ, ଚଙ୍ଗଚଙ୍ଗ, ଛନ୍‌ଛନ୍ । ଏଠି, ସେଠି, ଓଡ଼ିଶାରେ, ବମ୍ବେରେ, ହିମାଳୟରେ, ବଙ୍ଗାଳିଘରେ, ତାମିଲଘରେ, ପଠାଣଘରେ, ହାଡ଼ିଘରେ, ରାଜ ଉଆସରେ, ପତର କୁଡ଼ିଆରେ କନ୍‌ଷ୍ଟିଚ୍ୟୁଏଣ୍ଟ ଏସେମ୍ବ୍‌ଲିରେ, କୋରାପୁଟର ଗଦବା, ସଉରା ମେଳରେ...କେତେବେଳେ, କୋଉଠି କୋଉ କାମରେ ଥାଆନ୍ତି, ତା'ର ଠିକ୍‌ଠିକଣା ନଥାଏ । ରାଜନୀତିରୁ ବ୍ରହ୍ମବିଦ୍ୟା, କଷ୍ଟ୍ ଏକାଉଣ୍ଟାନ୍‌ସିରୁ ସଙ୍ଗୀତ, କୁଷ୍ଠରୋଗୀ ସେବାରୁ ଇଂଲିଶ୍ ଏମ୍,ଏ., ଉତ୍କଳ ସମ୍ମିଳନୀରୁ ଯାଦବ ସମ୍ମିଳନୀ, ଜୈନଧର୍ମ ଗବେଷଣାରୁ ଭୂତପ୍ରେତ ଚର୍ଚ୍ଚା—କୋଉଟା ଆଉ ବାଦ୍ ଯାଇଥିଲା ଲକ୍ଷ୍ମୀନାରାୟଣଙ୍କ ହାତରୁ ? ପୁଣି ରଗି ରଗିଟା ଏମ୍.ଏ. ସାଙ୍ଗକୁ ସକାଳୁ ବାରଟା ଯାଏ କୁରାଢି ଧରି କାଠଚିରା, ଚଉଦ୍ୱାରରୁ ଦେଉଳସାହି

ଧର୍ମସଭି ହେଉ ନଡ଼ାବୁହା, ଭୁବନେଶ୍ୱର ପଣ୍ଡାଚୋକାଙ୍କ ସାଙ୍ଗରେ ବିନ୍ଦୁସାଗର ପହଁର, କପିଳାସକୁ ପଞ୍ଚ ।ଏ ମିଶନ ସ୍କୁଲପିଲଙ୍କୁ ଧରି କଟକ ଯାଏ ବାଟଚଲା, ସାଲେପୁର ସ୍କୁଲ ପିଲଙ୍କ ସାଙ୍ଗରେ ବୁଢ଼ାଦିନେ ଦଉଡ଼ି ଦଉଡ଼ି ଫୁଟବଲ ଖେଳା, ଚଉଦ୍ୱାର ରଙ୍ଗମଂଚରେ ବାଷଠି ବର୍ଷ ବୟସରେ 'ନେତାଜୀ' ସାଜି ଗର୍ଜନଦିଆ —ସବୁଠି ଲକ୍ଷ୍ମୀନାରାୟଣ, ସବୁ କାମରେ ଲକ୍ଷ୍ମୀନାରାୟଣ ।

ଲକ୍ଷ୍ମୀନାରାୟଣ ଶିଶୁଭଳି ସରଳ, କୋମଳ, ଚପଳ; ତରୁଣ ଭଳି ଉଚ୍ଛଳ, ଉଦ୍ଦାମ, ଉଚ୍ଛୃଙ୍ଖଳ; ସ୍ଥବିର ଭଳି ଧୀର, ଶାନ୍ତ, ସାଧନାରତ, ତପସ୍ୟାମଗ୍ନ । ଲକ୍ଷ୍ମୀନାରାୟଣ ଅଦ୍‌ଭୁତ, ବିଚିତ୍ର, ଛବିଳ, ଦୀପ୍ତିମନ୍ତ ।

ନିଜକୁ ପର ଭିତରେ ପୁରାପୁରି ମିଶେଇ ଦେବାକୁ—ମିଳେଇ ଦେବାକୁ ସେ ଉତ୍କଳ ସମ୍ମିଳନୀର ସଂପାଦକ ଶ୍ରୀ ବସନ୍ତ କୁମାର ପାଣିଗ୍ରାହୀଙ୍କ ପୁରୁଣା ଚଟି ମାଗି ପିନ୍ଧନ୍ତି; ପ୍ରଫେସର ନାରାୟଣ ମିଶ୍ରଙ୍କ ପୁଅ ବାହାଘରକୁ ଗଲାବେଳେ ଗୋପାଳମାନେ ତାଙ୍କୁ ଛୋଟ ଜାତି କହି କାନ୍ଧେଇଲେ ନାହିଁ ବୋଲି ସେ ଜଣେ ଗୋପାଳକୁ ସବାରିରେ ବସେଇ, ନିଜେ ସବାରି କାନ୍ଧେଇ ହସିହସି ଯାଇଁ ନାରାୟଣ ମିଶ୍ରଙ୍କ ଘରେ ହାଜର !!

ସାମାନ୍ୟ ଟିକିଏ ଅହମିକା ଅଛି—ପାଠର ? ଜ୍ଞାନର ? ଗୁଣର ?

ସେ ରାଜନୀତି କରିଥିଲେ, ସାହିତ୍ୟ ଲେଖିଥିଲେ, ଗବେଷଣା କରିଥିଲେ, ବିଶ୍ୱବିଦ୍ୟାଳୟର ଉଚ୍ଚତମ ଡ଼ିଗ୍ରୀ ହାସଲ କରିଥିଲେ ଗୁରି ଗୁରି ଥର, ତଥାପି ସେ ରାଜନୀତିଜ୍ଞ ନୁହଁନ୍ତି, ସାହିତ୍ୟିକ ନୁହଁନ୍ତି, ଗବେଷକ ନୁହଁନ୍ତି ବା ଶିକ୍ଷାବିତ୍ ନୁହଁନ୍ତି । ସେ ଖାଲି ସେବକଟିଏ—ସେବକ ଲକ୍ଷ୍ମୀନାରାୟଣ ସାହୁ ।

ତେଣୁ ଡକ୍ଟର ହରେକୃଷ୍ଣ ମହତାବ୍ କହନ୍ତି—

"ଶ୍ରୀ ଲକ୍ଷ୍ମୀନାରାୟଣ ସାହୁଙ୍କ ଠାରୁ ମୁଁ ପ୍ରଥମେ ସାଧାରଣ ସେବା-କାର୍ଯ୍ୟ ସମ୍ବନ୍ଧରେ ପ୍ରାଥମିକ ଶିକ୍ଷାଲାଭ କରିଥିଲି । ସାଧାରଣ ସେବୀ ହେଲେ କି ପ୍ରକାର ଜୀବନ ଯାପନ ଓ କି ମନୋବୃତ୍ତିର ବିକାଶ ଆବଶ୍ୟକ ତାହା ତାଙ୍କ ଠାରୁ କେବଳ ମୁହଁରୁ ନୁହେଁ, ତାଙ୍କ ଜୀବନରୁ ଆମ୍ଭେମାନେ ଜାଣିବାକୁ

ସୁଯୋଗ ପାଇଥିଲୁ । ତାଙ୍କର ଜୀବନ ବହୁମୁଖୀ; କିନ୍ତୁ ସେବା ଥିଲା ତାଙ୍କ ଜୀବନର ମୁଖ୍ୟ ଧ୍ୟେୟ । ନିଜକୁ ଭୁଲିଯାଇ ଅନ୍ୟର ସୁଖଦୁଃଖରେ ଭଗୀ ହେବା ଥିଲା ତାଙ୍କର ସ୍ୱଭବ । ସେ ଥିଲେ ବାସ୍ତବିକ୍ ସେବକ ଶ୍ରେଷ୍ଠ ।”

(ସେବକ ଲକ୍ଷ୍ମୀନାରାୟଣ – ମୁଖବନ୍ଧ)

ଲକ୍ଷ୍ମୀନାରାୟଣ ମହାମନା ଗୋପାଳକୃଷ୍ଣ ଗୋଖଲେଙ୍କ ପ୍ରତିଷ୍ଠିତ The Servants of India Society ବା ଏବର 'ହିନ୍ଦ୍ ସେବକ ସମିତି'ର ଖାଲି ମାମୁଲି ସଭ୍ୟଟିଏ ନଥିଲେ, ସେ ପ୍ରକୃତରେ ଥିଲେ ଗୋଟିଏ Servant–ସେବକ–ଚାକର । ଦୀନ, ଦୁଃଖୀ, ଦଳିତ, ପତିତର ସେ ସେବକ; ବନ୍ୟା-ପ୍ରପୀଡ଼ିତ, ମରୁଡ଼ି ପ୍ରପୀଡ଼ିତ, ଦଙ୍ଗାହେଙ୍ଗାମ-ପ୍ରପୀଡ଼ିତ ଅସହାୟ ଜନତାର ସେ ସେବକ; ହରିଜନ, ଆଦିବାସୀର ସେବକ; କୁଷ୍ଠରୋଗୀ, ଯଯସ ରୋଗୀର ସେବକ; ଜାତି, ଧର୍ମ, ବର୍ଣ୍ଣ ନିର୍ବିଶେଷରେ ହିନ୍ଦୁ, ମୁସଲମାନ୍, ଖ୍ରୀଷ୍ଟିୟାନ୍, ଓଡ଼ିଆ, ବଙ୍ଗାଳି, ତେଲୁଗୁ, ତାମିଲ୍, ଗୁଜୁରାଟୀ ସମସ୍ତଙ୍କର ସେବକ; ଧନୀର ସେବକ, ନିର୍ଦ୍ଧନର ସେବକ; ବିଦ୍ୱାନର ସେବକ, ମୂର୍ଖର ସେବକ । ଏହା ନିଃସନ୍ଦେହ, ଏହା ସର୍ବବାଦୀସମ୍ମତ, ସମସ୍ତଙ୍କ ସେବାରେ ସେ ହଜି ଯାଉଥିଲେ, ମଜ୍ଜି ଯାଉଥିଲେ ।

କୁଷ୍ଠରୋଗୀଙ୍କ ସେବା କରି କରି ସେ ନିଜେ କୁଷ୍ଠରୋଗୀ ହେଲେ; ଶ୍ୱାସରୋଗୀଙ୍କ ସେବା କରି କରି ନିଜେ ଶ୍ୱାସରୋଗୀ ହେଲେ । ଗରିବଙ୍କ ସେବା କରି କରି ସେ ଗାନ୍ଧିଜୀଙ୍କ ଭଳି ସବୁଦିନେ ଗରିବ, ନୁଖୁରା, ମଳିମୁଣ୍ଡିଆ ହୋଇ ରହିଗଲେ; ଯଯସ୍ ରୋଗୀଙ୍କ ସେବା କରିକରି, ତାଙ୍କ ଥଲ୍‌ଥଲ୍ ଘା' ଧୋଇ ଧୋଇ ସେ ପୂରାପୂରି କୋରାପୁଟର ଆଦିବାସୀଙ୍କ ସାଙ୍ଗରେ ଆଦିବାସୀ ହୋଇ ଗଲେ । ତଥାପି ପର ଭିତରେ ନିଜକୁ ମିଶେଇ ଦେବାକୁ, ମିଳେଇ ଦେବାକୁ, ସାମିଲ କରିଦେବାକୁ ସେ ଯେମିତି ଦିନରାତି ପାଗଳ, ବିଭୋର, ବିହ୍ୱଳ, ତନ୍ମୟ ।

ଇଂରେଜି କବିଙ୍କ ଭଷାରେ ସେ ଯେମିତି କହୁଥିଲେ—

"Give me the lowest place,
And if for me, the lowest is too high.
Make me more low".

(ମୋତେ ସର୍ବନିମ୍ନ ସ୍ଥାନଟି ଦିଅ,
ଆଉ ସର୍ବନିମ୍ନ ସ୍ଥାନଟି ଯଦି ମୋ ପାଇଁ ଉଚ୍ଚ
ଆଉ ଗୋଟିଏ ନିମ୍ନତର ସ୍ଥାନ ମୋ ପାଇଁ କର ।)

ସେ ନିଜେ ହିଁ ତାଙ୍କ କବିତାରେ ଲେଖିଛନ୍ତି—

"ପାଦର ଧୂଳି ଆଣରେ ବୋହି ଅଛ ଯେ ଯହିଁ
ଲଭିବି ମୁଁ ପରମ ଶାନ୍ତି ସେ ଧୂଳି ଶିରେ ବୋହି ।"

'ପରଶ'—ଲକ୍ଷ୍ମୀନାରାୟଣ ଗ୍ରନ୍ଥାବଳୀ—ପୃ ୫୯

ତେଣୁ ସେ ଥିଲେ ସମସ୍ତଙ୍କର, ସମସ୍ତେ ତାଙ୍କର । ସେ ଅଜାତଶତ୍ରୁ ।
ସେ ସମସ୍ତଙ୍କର ପାଦତଳର ଘାସଟିଏ ।

ମହାକବି କାଳିଦାସଙ୍କ ଅମର ବାଣୀ—

"ଆଦାନଂହି ବିସର୍ଗାୟ ସତାଂ ବାରିମୁଚମିବ ।"

ଓଡ଼ିଆ କବି ଗାଇଲେ—

"ନିଜ ଦୁଃଖେ ନୟନୁ ମୋ ନ ଗଳୁ ଲୋତକ
ପର ଦୁଃଖେ କାନ୍ଦି ହେଉ ଜୀବନ ସାର୍ଥକ ।

X X X

"ଆଲୋକ ବିତରେ ସବିତା
ଯଥା ନିଜକୁ ଜାଳି
ପର ହିତେ ଯଥା ବାରିଦ
ଦିଏ ନିଜକୁ ଢାଳି ।
ନିଜେ କଷ୍ଟ ସହି ପାଦପ
ଯଥା ଛାୟା ବିତରେ
ସାଧୁଜନ ତଥା ଜୀବନ
ଦିଏ ପର ହିତରେ ।"

ଏ ସମସ୍ତ ଯେମିତି ଲକ୍ଷ୍ମୀନାରାୟଣଙ୍କ ରକ୍ତେ ରକ୍ତେ ମିଶି ଯାଇଥିଲା ।

ଭାଗବତର ବାଣୀ—

"ଏ ଜନ୍ମ ଧନ୍ୟ ଏ ସଂସାରେ
ଯେ ରହେ ପର ଉପକାରେ ।"

ସେ ଏହା ମର୍ମେ ମର୍ମେ ଅନୁଭବ କରୁଥିଲେ। ତେଣୁ ଜୀବନକୁ ଉତ୍ସର୍ଗ କରିଦେଇଥିଲେ ଖାଲି ସେବାରେ ଆଉ ସେବାରେ ।

ସେବକ ଲକ୍ଷ୍ମୀନାରାୟଣ ଆଗ୍ରାର୍ଯ୍ୟ ହରିହରଙ୍କ ଭଳି, ବାବା ଆମ୍‌ଟେଙ୍କ ଭଳି, ଡକ୍ଟର ଆଲବର୍ଟ ସ୍ୱାଏଚରଙ୍କ ଭଳି, ମଦର ଟେରେସାଙ୍କ ଭଳି ନିଜ ଜୀବନକୁ ଜନସେବାରେ ଖାଲି ଅଜାଡି ଦେଇଥିଲେ, ଲୋଟାଇ ଦେଇଥିଲେ; ବଦଳରେ କିଛି ହିଁ ଗ୍ରହି ନ ଥିଲେ ।

ଭାରତର ଚିଫ୍ ଜଷ୍ଟିସ୍ ମାନ୍ୟବର ଶ୍ରୀ ରଙ୍ଗନାଥ ମିଶ୍ର ଯଥାର୍ଥରେ କହିଛନ୍ତି—

"ସ୍ୱର୍ଗତ ଲକ୍ଷ୍ମୀନାରାୟଣ ଜଣେ ପ୍ରାଣବନ୍ତ, ପରୋପକାରୀ, ସ୍ୱାର୍ଥ-ତ୍ୟାଗୀ, ନିଷ୍କପଟ ଜନସେବୀ ଥିଲେ । ଜାତି ଧର୍ମ ନିର୍ବିଶେଷରେ ଜନସେବା ଥିଲା ତାଙ୍କର କର୍ମଧାରା । ରାଜନୀତିରୁ ଦୂରରେ ରହି, ଅନ୍ୟ ମାର୍ଗରେ ସମୟ ବ୍ୟୟ ନ କରି ଜନସେବାରେ କାଳାତିପାତ କରିବା ଥିଲା ତାଙ୍କ ଜୀବନର ଏକମାତ୍ର ଲକ୍ଷ୍ୟ । ଯେତେବେଳେ ସେ ଭାରତର ସମ୍ବିଧାନ ସଭାକୁ ସଭ୍ୟ ରୂପେ ଗଲେ, ଏହି ଦରିଦ୍ର ଦେଶର ଜନସାଧାରଣଙ୍କର ସେବାହିଁ ତାଙ୍କର ଉଦ୍ଦେଶ୍ୟ ଥିଲା ।

ଲକ୍ଷ୍ମୀନାରାୟଣବାବୁଙ୍କ ପରି ଜନସେବକ ଏ ଦେଶରେ ବିରଳ । ଏହି ଦେଶର ନଗ୍ନ, ଅର୍ଦ୍ଧନଗ୍ନ, ରୁଗ୍‌ଣ, କାଙ୍ଗାଳ, ଦରିଦ୍ର ଆଦିବାସୀ ଓ ହରିଜନ ଥିଲେ ତାଙ୍କର ସବୁଠାରୁ ଆଦରର ପାତ୍ର । ସେମାନଙ୍କ ସହିତ ଆଦିବାସୀ ଓ ହରିଜନ ଭଳି ଚଳି ତାଙ୍କର ଭାଷା, ଚଳଣି ଓ ଭାବଧାରା ବୁଝି ସେମାନଙ୍କ ଅସୁବିଧା ଦୂର କରିବା ଥିଲା ତାଙ୍କର ବ୍ରତ ।"

—ଚିରଯୌବନ ଚିରବସନ୍ତ, ପୃ ୩୦

ଭାରତର ପ୍ରଧାନମନ୍ତ୍ରୀ, ଲୋକସେବକ ମଣ୍ଡଳର ସଭାପତି ତଥା ସେବା, ସାଧୁତା, ସତ୍ ସାହସର ଅବତାର **ଶାସ୍ତ୍ରୀ ଲାଲ୍** ବାହାଦୂର ଶାସ୍ତ୍ରୀ କହନ୍ତି—

"I pay my humble tiibute to the memory of that great public worker, Dr. Lakshmi Narayan Sahu of Orissa, who dedicated his whole life to the service of India. As a member of the Servants of India Society, he served the count:y in various spheres. His sacrifice, suffering. devotion, honesty and integrity impressed us most. He was an erudite scholar and a great littera-teur. He served as a poor man and sacr ficed himself in the service of the poor. May his soul inspire us."

( 'ମୋ ବାରବୁଲା ଜୀବନ' ପରିଶିଷ୍ଟ—ପୃ ୨୫ )

(ଓଡ଼ିଶାର ମହାନ୍ ସମାଜସେବୀ ଡକ୍ଟର ଲକ୍ଷ୍ମୀନାରାୟଣ ସାହୁ, ଯିଏ ତାଙ୍କର ସମଗ୍ର ଜୀବନ ଭାରତର ସେବା ପାଇଁ ଉତ୍ସର୍ଗ କରିଥିଲେ, ମୁଁ ତାଙ୍କୁ ଗଭୀର ଶ୍ରଦ୍ଧାଞ୍ଜଳି ଅର୍ପଣ କରୁଛି । ହିନ୍ଦ୍ ସେବକ ସମିତିର ଜଣେ ସଭ୍ୟ ହିସାବରେ ସେ ଦେଶର ବିଭିନ୍ନ ସେବା କାର୍ଯ୍ୟରେ ନିଜକୁ ନିୟୋଜିତ କରିଥିଲେ । ତାଙ୍କ ତ୍ୟାଗ, ନିଷ୍ଠା, କଷ୍ଟ ସହିଷ୍ଣୁତା, ସାଧୁତା ଓ ଐକାନ୍ତିକତା ଆମ ସମସ୍ତଙ୍କୁ ମୁଗ୍ଧ କରିଥିଲା । ସେ ଜଣେ ଜ୍ଞାନଲିପ୍ସୁ ଓ ମହାନ୍ ସାହିତ୍ୟିକ ଥିଲେ । ସେ ନିଜେ ଦରିଦ୍ର ଭାବରେ ଜୀବନଯାପନ କରୁଥିଲେ ଓ ଦରିଦ୍ରମାନଙ୍କ ସେବାରେ ହିଁ ଜୀବନ ବିତାଇ ଦେଇଥିଲେ । ତାଙ୍କ ପବିତ୍ର ଆତ୍ମା ଆମ୍ଭମାନଙ୍କୁ ଅନୁପ୍ରାଣିତ କରୁ ।

( ଲାଲବାହାଦୁର ଶାସ୍ତ୍ରୀଙ୍କ ଅଭିମତର ଓଡ଼ିଆ ଅନୁବାଦ )

ଓଡ଼ିଶା ସାହିତ୍ୟ ଏକାଡେମୀ ସଭାପତି, ସାହିତ୍ୟିକ ଶ୍ରୀ ସୁରେନ୍ଦ୍ର ମହାନ୍ତି କହନ୍ତି—

"ମୋ ଦୃଷ୍ଟିରେ ଲକ୍ଷ୍ମୀନାରାୟଣ ସାହୁଜୀ ଥିଲେ ଜଣେ ଜ୍ଞାନତପସ୍ୱୀ । ତଥାପି ସେ କର୍ମଯୋଗକୁ ମଧ୍ୟ ଛାଡ଼ି ନ ଥିଲେ । ତାଙ୍କଠାରେ ଜ୍ଞାନ ଓ କର୍ମର ଅପୂର୍ବ ସମନ୍ୱୟ ଘଟିଥିଲା । ପୁଣି ଆର୍ତ୍ତ ଓ ପୀଡ଼ିତର ସେବା ତାଙ୍କ ପକ୍ଷରେ ପରମ ଧର୍ମ ଥିଲା । ସେବା ପୁଣି ଥିଲା ତାଙ୍କର ବ୍ରହ୍ମୋପଲବ୍‌ଧିର ପରିପ୍ରକାଶ । ସେ ନିଜକୁ ସମସ୍ତଙ୍କ ଭିତରେ ଦେଖୁଥିଲେ । ସେଥିପାଇଁ କୁଷ୍ଠ ରୋଗୀଟିର ସୁଦ୍ଧା ସେବା କରିବା ପାଇଁ ସେ କୁଣ୍ଠିତ ହେଉ ନ ଥିଲେ । ଏହା ତାଙ୍କର ଆଧ୍ୟାତ୍ମିକ ଉପଲବ୍‌ଧିରୁ କେବଳ ସମ୍ଭବ ହୋଇ ପାରିଥିଲା ।"

( 'ଲକ୍ଷ୍ମୀନାରାୟଣ ସାହୁ ଲୋକଟି କିଏ ?'—ମୁଖବନ୍ଧ )

□□□

॥ ଦୁଇ ॥

## ଲକ୍ଷ୍ମୀନାରାୟଣ ସାହୁ କାଉରେ ପାଣ

ଏଇ ଲକ୍ଷ୍ମୀନାରାୟଣଙ୍କର ଚେହେରା କେମିତି ? ଚଳଣି କେମିତି ? ହାବଭାବ କେମିତି ?

ଜଣେ ଡେଙ୍ଗା, ଜୋରଦାରିଆ ପଞ୍ଝହତା ମର୍ଦ୍ଦ । ମୁଣ୍ଡ ଲଣ୍ଡା । ଆଖିରେ ମୋଟା ଚଷମା । ପାଦରେ ହଳେ ଚଟି । ଦେହରେ ବେଳେବେଳେ ଚଦର, ବେଳେବେଳେ ଗୋଟାଏ ଲମ୍ବା, ଅଣଢଣିଆ କୋଟ, ପୁଣି ବେଳେବେଳେ ନିର୍ଦ୍ଧୁମ୍ ଫୁଙ୍ଗୁଳା । ଖାଲି ଲୁଗା ଖଣ୍ଡେ । ଗୁଲିଗୁଲି ନଇଲେ ସାଇକେଲ୍ ଚଢି ସେଇ ଫୁଙ୍ଗୁଳା ଦେହରେ ବୁଲୁଛନ୍ତି କଟକ ସହରରେ । କାନ୍ଧରେ ଝୁଲମୁଣି, ଆଉ ଝୁଲମୁଣିରେ ବହି, ଟିପାଖାତା, କଲମ, ଆଉ ଶ୍ୱାସର ଔଷଧ, ନାକରେ ନଳି ଲଗାଇ ପମ୍ପ କରିବାର ଯନ୍ତ୍ର ।

—ଏଇ ଲକ୍ଷ୍ମୀନାରାୟଣ ସାହୁ ।

ବେଳେବେଳେ ବୌଦ୍ଧଭିକ୍ଷୁ ଭଳି ଚେହେରା । ବେଳେବେଳେ ଖ୍ରୀଷ୍ଟିୟାନ୍ ପାଦ୍ରୀ—ଖାଲି ଲମ୍ବା ଗୋଟାଏ ସଫେଦ୍ ଅଲ୍‌ଖେଲ୍ଲା, ବେକରୁ ପାଦ ଯାଏ । ବେଳେବେଳେ ବୁଢ଼ାଦିନେ ହାପ୍ ପ୍ୟାଣ୍ଟ୍ ପିନ୍ଧି ସ୍କୁଲପିଲାଙ୍କ ସାଙ୍ଗରେ ଫୁଟବଲ ଖେଳିବାକୁ ଉଛନ୍ନ, ଆଉ ବେଳେବେଳେ ବିପ୍ଳବୀ ଗୋବିନ୍ଦ ମିଶ୍ର, 'ଜାତୀୟ ଜୀବନର ଆତ୍ମବିକାଶ'ର ପ୍ରଣେତାଙ୍କ ସାଙ୍ଗରେ ନିର୍ଦ୍ଧୁମ୍ ଖରାରେ ସିଝିସିଝି ବା ପ୍ରଚଣ୍ଡ ବର୍ଷାରେ ଭିଜିଭିଜି ବାଟ ଗୁଲିଗୁଲି ଦେହକୁ ଟାଣ କରିବାକୁ, ଟାଗଡ଼ା କରିବାକୁ ତତ୍ପର । କେତେବେଳେ ବିଶ୍ୱବିଦ୍ୟାଳୟର ଏକ ନିରୀହ ପରୀକ୍ଷାର୍ଥୀ । ପୁଣି ଅନ୍ୟବେଳେ ଗମ୍ଭୀର ପାର୍ଲିଆମେଣ୍ଟାରିୟାନ୍—

ପ୍ରଧାନମନ୍ତ୍ରୀ ଜବାହାରଲାଲ୍‌ଙ୍କୁ ପାର୍ଲିଆମେଣ୍ଟ୍‌ରେ ବା ଡକ୍ଟର ହରେକୃଷ୍ଣ ମହତାବ୍‌ଙ୍କୁ ଓଡ଼ିଶା ଏସେମ୍ବ୍ଲୀରେ ଖେକ୍‌ଠୋକ୍ ପ୍ରଶ୍ନ ପଚାରିବାରେ ପ୍ରକଂପିତ ଦୁର୍ବାସା !

କେତେବେଳେ ଦିଲ୍ଲୀରେ—ରାଷ୍ଟ୍ରପତି ଡକ୍ଟର ରାଜେନ୍ଦ୍ର ପ୍ରସାଦଙ୍କ ପାଖରେ; ଡକ୍ଟର ସର୍ବପଲ୍ଲୀ ରାଧାକୃଷ୍ଣନ୍‌ଙ୍କ ପାଖରେ ବା ଭାରତରତ୍ନ ଦାର୍ଶନିକ ଭଗବାନ ଦାସଙ୍କ ପାଖରେ ତ କେତେବେଳେ କୋରାପୁଟର ଘନ ଜଙ୍ଗଲରେ ଆଦିବାସୀ ପରଜା, ଗଦବାଙ୍କ ମେଳରେ; କେତେବେଳେ ଆସାମର ଚା' ବଗିଚାରେ କୁଲୀଙ୍କ କୁଡ଼ିଆରେ ତ କେତେବେଳେ ବମ୍ବେର ରାଜ୍ୟପାଳଙ୍କ ଶୟନ କକ୍ଷରେ; କେତେବେଳେ ପୁରୀ ଜିଲ୍ଲାର ଦୁର୍ଭିକ୍ଷ-ପ୍ରପୀଡ଼ିତ ଡେଲ୍ଟା ଅଞ୍ଚଳରେ ତ, କେତେବେଳେ କନିକା ପ୍ରଜାମେଳି ବେଳେ ବାଘୁ, ବିସ୍ତୁନିଙ୍କ ସଦ୍ୟ ଗୁଳିଖିଆ ରକ୍ତାକ୍ତ ଶବ ପାଖରେ; କେତେବେଳେ ୧୯୪୨ ଅଗଷ୍ଟ ଆନ୍ଦୋଳନରେ ଜେଲ୍‌ରେ ସଢୁଥିବା କଂଗ୍ରେସ ଲୋକଙ୍କ ଦାରିଦ୍ର୍ୟ-ପ୍ରପୀଡ଼ିତ ଗୃହରେ ସାହାଯ୍ୟ ବାଣ୍ଟୁଛନ୍ତି ତ, କେତେବେଳେ ଆସାମର ଭୟଙ୍କର ବନ୍ୟା ବେଳେ ପଦ୍ମାନଦୀରେ ପହଁରି ପହଁରି ଆର ପାରିକୁ ଯାଇଁ ଚୂଡ଼ା ଗୁଡ଼ଳ ବାଣ୍ଟିବାରେ ବ୍ୟସ୍ତ; ପୁଣି କେତେବେଳେ "ଓଡ଼ିଶାରେ ଜୈନଧର୍ମ" ସମ୍ପର୍କରେ ପି.ଏଚ୍.ଡ଼ି. ଥେସିସ୍ ଲେଖି ବିଶ୍ୱବିଦ୍ୟାଳୟରେ ଦାଖଲ କରିବାକୁ ତତ୍ପର ତ, କେତେବେଳେ ମଂଜୁଷାରେ ଉତ୍କଳ-ସମ୍ମିଳନୀରେ ସଭାପତି ହିସାବରେ ପଡ଼ୋଶୀଙ୍କ ଶୋଷଣ, ପେଷଣ, କଷଣ, ନିର୍ଯ୍ୟାତନରୁ ଓଡ଼ିଆଙ୍କୁ ରକ୍ଷା କରିବା ପାଇଁ ବଜ୍ର ହୁଙ୍କାର—ଗର୍ଜନ !

ଦିନେ ପୂରା ଓଡ଼ିଆ, ଦିନେ ପୂରା ଭାରତୀୟ, ଦିନେ ପୁଣି ଚରମ ମାନବବାଦୀ —ଗରିବ ମୋଚି ବୁଢ଼ାଟି ତାଙ୍କର ଧର୍ମପିତା, ବକ୍‌ସି ବଜାରର ଗରିବ ମୁସଲ-ମାନ୍ ବୁଢ଼ାଟିର ସେ ଧର୍ମପୁଅ—ଏକା ଘରେ ରହିବା, ଏକା ଥାଳିରେ ଖାଇବା, ଏକା ବିଛଣାରେ ଶୋଇବା—ଦିନକୁଦିନ, ମାସମାସ। କଟକରେ ବାଇବେଲ୍ ସୋସାଇଟି, କୋରନ୍ କ୍ଲବ୍, ବ୍ରାହ୍ମ ସମାଜ ଗଢ଼ିବାରେ—ଘଣ୍ଟା ଘଣ୍ଟା ସେଠି ବକ୍ତୃତା ଦେବାରେ ଅଗ୍ରଣୀ କିଏ ? ଚଉଦ୍ୱାରରେ, ଟାଙ୍ଗିରେ, ଆଗ୍ରାହାଟରେ, ମଣ୍ଡାପଡ଼ାରେ, ଗୋଡ଼ିପାଟଣାରେ କୁଷ୍ଠରୋଗୀଙ୍କ ଘା'ଧୋଇବାରେ—ତାଙ୍କ ପିଠି ଆଉଁସି, ଆହା କହି, ଆଶ୍ୱାସନା ଦେବାର ଲୋକଟି କିଏ ? ରାୟଗଡ଼ାରେ

ଆଦିବାସୀ କୁଡିଆରେ ଇଅସ୍ ରୋଗୀଙ୍କ ପୋକ ସାଲୁସାଲୁ ଘା' ଧୋଇବାରେ, ଆଦିବାସୀ ପିଲାଙ୍କୁ ପାଠ ପଢ଼େଇ ତାଙ୍କ ମୁହଁରେ ହସ ଫୁଟେଇବାକୁ ୧୯୩୯ରୁ ରାୟଗଡ଼ାରେ "ଠକ୍କରବାପା ଆଶ୍ରମ" ସ୍ଥାପନ କରିବାରେ ଅଗ୍ରଣୀ କିଏ ?

ସେଇ ଲକ୍ଷ୍ମୀନାରାୟଣ ।

ଲକ୍ଷ୍ମୀନାରାୟଣ ମୁଲିଆର ବନ୍ଧୁ, ମାଲିକର ବନ୍ଧୁ, ରାଜାର ବନ୍ଧୁ , ପ୍ରଜାର ବନ୍ଧୁ, ମନ୍ତ୍ରୀଙ୍କ ବନ୍ଧୁ , ବିରୋଧୀ ଦଳ ନେତାଙ୍କ ବନ୍ଧୁ, ଗାଁରେ ମଳିମୁଣ୍ଡିଆଙ୍କ ବନ୍ଧୁ , ବିଶ୍ୱବିଦ୍ୟାଳୟରେ ବିଲାତ-ଫେରନ୍ତା ଝଲ୍‌ମଲ୍ ପ୍ରଫେସରଙ୍କ ବନ୍ଧୁ; ରାଷ୍ଟ୍ରପତି ଡକ୍ଟର ରାଜେନ୍ଦ୍ର ପ୍ରସାଦଙ୍କ ବନ୍ଧୁ, ଚଉଦ୍ୱାର ପାଣସାହିର ଡମା ପାଣର ବନ୍ଧୁ—ବହୁକାଳରୁ ୧୯୨୭ରୁ ଯେତେବେଳେ ଗାନ୍ଧିଜୀ ବି ହରିଜନ ଆନ୍ଦୋଳନ ଆରମ୍ଭ କରିନାହାନ୍ତି । ଆଉ ଶେଷରେ ସେଇ ଡମା ପାଣକୁ ମୁଣ୍ଡରେ ବସେଇବାକୁ ବହିରେ ଲେଖା—"ଲକ୍ଷ୍ମୀନାରାୟଣ ସାହୁ ଜାତିରେ ପାଣ", ଆଉ କବିତାରେ ଲେଖା—

"କି ପିଲା ତୁମେ ?<br>
ପାଣପିଲା ଆମେ,<br>
ଏହି କଥା ଶୁଣି ମନ ମୋର ହୋଇଗଲା ଦୁଃଖୀ,<br>
କେତେଦିନ ଧରି ମା ଛେଉଣ୍ଡ ପରି ରହିଥିବ ଯୁଗଯାକ ?

କେହି କି ତାଙ୍କରି ପାଇଁ<br>
ଏତିକି ଭାବନ୍ତି ନାହିଁ<br>
କିଂପା ସେ ଜନମ ହୋଇ<br>
ରହିବ ଦୂରେ ଦୂରେ ଅଛୁଆଁ ହୋଇ ?

ଲାଗଇ ପ୍ରାଣେ ଆଘାତ<br>
ମରମ ହୁଏ ପୀଡ଼ିତ<br>
ରହିଆଛେ ସାକ୍ଷୀ ଦଶଦିଗପାଳ<br>
ପାଣପିଲା କି ରହିବ ପାଣ ଚିରକାଳ ?"

—ଲକ୍ଷ୍ମୀନାରାୟଣ ଗ୍ରନ୍ଥାବଳୀ...ପୃ ୫୯

ଏତେ ଦରଦୀ ନ ହେଲେ, ସ୍ନେହୀ ନ ହେଲେ, ପାଗଳ ନହେଲେ କିଏ ଏମିତି କରିବ ? କିଏ ଏମିତି ଲେଖିବ ?

ମହାନ୍ ବିପ୍ଳବୀ, ମହାନ୍ ସାଧୁ ସଚ୍ଚରିତ୍ର, ଓଡ଼ିଶାର ପୂର୍ବତନ ମୁଖ୍ୟମନ୍ତ୍ରୀ ଶ୍ରୀଯୁକ୍ତ ନବକୃଷ୍ଣ ଚୌଧୁରୀ କହନ୍ତି—

"ଅତି ଅଳ୍ପ ବୟସରେ ଲକ୍ଷ୍ମୀନାରାୟଣ ସାହୁଙ୍କର ଘନିଷ୍ଠ ସଂସ୍ପର୍ଶରେ ଆସିବାର ସୌଭାଗ୍ୟ ମୋର ହୋଇଥିଲା । ତାଙ୍କରି ପ୍ରଭାବ ମୋତେ ହିନ୍ଦୁ ସବର୍ଣ୍ଣ ମଧ୍ୟବିତ୍ତ ଭଦ୍ରଲୋକ ସମାଜର ପ୍ରଭାବରୁ ମୁକ୍ତ କରିବାରେ ବହୁତ ସାହାଯ୍ୟ କରିଥିଲା । ସେ "ଜାତିନେ ପାଣ" ବୋଲି ନିଜର ପରିଚୟ ଦେଲେ । ଆମେ କେତେଜଣ ସେହିଦିନୁ ବଦଳିଗଲୁ—ସତେ ଯେପରି ଆମର ଧର୍ମାନ୍ତର ବା Conversion ହୋଇଗଲା । ସେତେବେଳକୁ ଗାନ୍ଧୀ ଭାରତକୁ ଆସି ନଥିଲେ କି ତାଙ୍କ କଥା ଆମେ ଶୁଣିନଥିଲୁ । ଆମର ଧୋବଧାଉଳିଆ ଭଦ୍ର-ଶିକ୍ଷିତ-ସମାଜଠାରୁ ଆମେ ଯେ ଟିକିଏ ଦୂରେଇ ରହି ପାରିଛୁ, ତାହା ଅନେକ ପରିମାଣରେ ଲକ୍ଷ୍ମୀନାରାୟଣ ସାହୁଙ୍କ ପ୍ରଭାବରେ ।"

(ଚିର ଯୌବନ ଚିର ବସନ୍ତ...ପୃ୧୬)

ଉତ୍କଳ ବିଶ୍ୱବିଦ୍ୟାଳୟର ପୂର୍ବତନ କୁଳପତି, ଶିକ୍ଷାବିତ୍ ଡକ୍ଟର ସଦାଶିବ ମିଶ୍ର କହନ୍ତି—

"ଦଳିତ ଓ ଅବହେଳିତ ଶ୍ରେଣୀର ଉନ୍ନତି ପାଇଁ ସେ (ଲକ୍ଷ୍ମୀନାରାୟଣ) ଅବିରତ ଉଦ୍ୟମ କରିଚାଲିଥିଲେ । ସେଥିପାଇଁ ସେ କେତେଗୁଡ଼ିଏ ଅନୁନ୍ନତ ସ୍ଥାନ ବାଛି ନେଇଥିଲେ । ଚଉଦୁଆର ଥିଲା ସେଥିମଧ୍ୟରୁ ଗୋଟିଏ କର୍ମକ୍ଷେତ୍ର । ସେଠାରେ ସେ ଗୋଟିଏ ସ୍କୁଲ ଆରମ୍ଭ କରିଥିଲେ । ମନେଅଛି, ଥରେ ମୋତେ ସେଠାକୁ ଯିବାକୁ ନିମନ୍ତ୍ରଣ କରିଥିଲେ । ଖରଦିନ । ମୁଁ ଯାଇଁ ସେଠାରେ ପହଞ୍ଚିଲି । ତାଙ୍କୁ ଖୋଜିଲି, ପାଇଲିନାହିଁ । ପଚାରି ପଚାରି ଯାଇ ଗୋଟିଏ କୁଟୀରରେ ପହଞ୍ଚିଲି । ଗୋଟିଏ ତଥାକଥିତ ଅସ୍ପୃଶ୍ୟ ଶ୍ରେଣୀ ଲୋକର ସେ ଘର । ଦେଖିଲି ମାଟି ପିଣ୍ଡାରେ ଖଣ୍ଡିଏ ଖଜୁରୀ ପଟି ଉପରେ ଲକ୍ଷ୍ମୀନାରାୟଣ ସାହୁ ଶୋଇଛନ୍ତି ଟିକିଏ ପାଟି କରି ନମସ୍କାର କଲି । ସେ ଉଠି ପଡ଼ିଲେ

ଛାଇ ଗଡ଼ିଲା ବେଳକୁ ତାଙ୍କ ସ୍କୁଲକୁ ଗଲୁ । ସେଠାରେ ଗୋଟିଏ ସଭା ହେଲା । ସେଇ ପ୍ରାଥମିକ ସ୍କୁଲଟି କ୍ରମେକ୍ରମେ ଉନ୍ନତ ହୋଇ ଗୋଟିଏ ପ୍ରଖ୍ୟାତ ହାଇସ୍କୁଲରେ ପରିଣତ ହୋଇଛି । ସେ ଦୃଶ୍ୟଟି ମୋର ମନେଅଛି ।

ସେବା ଥିଲା ତାଙ୍କର ଧର୍ମ । ସେଥିପାଇଁ ମାଧ୍ୟମ ହେଲା ଶିକ୍ଷାର ପ୍ରସାର । ଦରିଦ୍ର ଓ ଉପେକ୍ଷିତ ପିଲାଙ୍କ ପାଇଁ ତିଆରି ହେଲା ଗୋଟିଏ ଛାତ୍ରାବାସ । ସେଠାରେ ପାଠପଢ଼ା ସହିତ ବିଭିନ୍ନ ହସ୍ତକର୍ମ କରିବା ଲାଗି ବ୍ୟବସ୍ଥା ହେଲା । ସେଇଟି ଏବେ ଏକ ପ୍ରତିଷ୍ଠିତ ଅନୁଷ୍ଠାନ ହୋଇଯାଇଛି । ଅତି ସୁନ୍ଦର ସେଠାର ପରିବେଶ । ଦେଖିଲେ ଲକ୍ଷ୍ମୀନାରାୟଣଙ୍କର ସେବା ଏବଂ ଅକ୍ଲାନ୍ତ ଉଦ୍ୟମ ପ୍ରତିଭାତ ହୋଇଯାଏ । ଏଗୁଡ଼ିକ ସାଧନାର ପୀଠ । ସେଠାକୁ କେତେଥର ଯିବାର ସୁଯୋଗ ପାଇଛି ।”

(ଚିର ଯୌବନ ଚିର ବସନ୍ତ, ପୃ୨୮-୨୯)

□□□

## ॥ ତିନି ॥

## ଚପଳ, ଚଞ୍ଚଳ ଲକ୍ଷ୍ମୀନାରାୟଣ

"Lakshmi Narayan was not a saint. He used to steal, tell lies, tease his teacher, run away from home.

X X X X

He was a high-spirited boy, excitable and obstinate. His school boy days were full of adventures, full of mischief)"

('Laxmi Narayan Sahu—An Itinerant Iceberg'
—Dr. P. M. Nayak
'ଚିର ଯୌବନ ଚିର ବସନ୍ତ'—ପୃ ୫

(ଲକ୍ଷ୍ମୀନାରାୟଣ ସାହୁ ଜଣେ ମହାତ୍ମା, ମହାପୁରୁଷ ନଥିଲେ । ସେ ଚୋରି କରୁଥିଲେ, ମିଛ କହୁଥିଲେ, ଶିକ୍ଷକମାନଙ୍କୁ କଟୁକଥା କହି ଆଘାତ ଦେଉଥିଲେ, ପୁଣି ଘର ଛାଡ଼ି କୁଆଡ଼େ କୁଆଡ଼େ ପଳେଇ ଯାଉଥିଲେ ।

X X X X

ପିଲାବେଳେ ସେ ଅତି ଉଦ୍ଦାମ, ଉଚ୍ଛନ୍ନ ଥିଲେ, ଭରି ଏକଜିଦିଆ ଥିଲେ ଓ ଟିକିଏ ଟିକିଏ କଥାରେ ଉତ୍ତେଜିତ ହେଇ ଯାଉଥିଲେ । ସ୍କୁଲରେ ପାଠ ପଢ଼ିଲାବେଳେ ସେ ବଡ଼ ଦୁଃସାହସୀ ଥିଲେ ଓ ନାନା ଛୋଟ ଛୋଟ ବଦ୍‌ମାସି ତାଙ୍କ ଭିତରେ ଦେଖା ଯାଉଥିଲା)

ଇଂରେଜି ପ୍ରାଧ୍ୟାପକ ଡ଼କ୍ଟର ପବିତ୍ର ମୋହନ ନାୟକ ଏହି କଥା କହନ୍ତି, ଅବଶ୍ୟ ଗଭୀର ଶ୍ରଦ୍ଧା ଓ ସହାନୁଭୂତିର ସହ । ଆଜି ଯିଏ ଏହି ଲୋକଟି ଏତେ ବଡ଼ ହେଲେ—ଦେଶହିତୈଷୀ, ଜନହିତୈଷୀ, ପରମ ମାନବ-ବାଦୀ ହେଲେ; କିନ୍ତୁ ପିଲାଦିନେ, ଯେତେବେଳେ ସେ ସାନ ଥିଲେ, ସେତେ-ବେଳେ ସେ ବି ସବୁ ପିଲାଙ୍କ ଭଳି ଖୁବ୍ ଦୁଷ୍ଟ ଥିଲେ, ମିଛ କହୁଥିଲେ, ଲୁଚିଛପି ସିଗାରେଟ୍ ଖାଉଥିଲେ, ବାପାଙ୍କ ବାକ୍ସରୁ ଚୋରି କରୁଥିଲେ ଧରା ପଡ଼ିବା ଭୟରେ ଘରୁ ପଳେଇ ଯାଉଥିଲେ, ବାପ ମା'ଙ୍କୁ ହଇରାଣ କରି ମାରୁଥିଲେ, ଟିଣ ଟିଣ କିରାସିନି ମଝି ନଈକି ଫିଙ୍ଗି ଦେଉଥିଲେ, ଗୁଡ଼ି ଉଡ଼ାରେ, ପାରା ଉଡ଼ାରେ ଦିନଦିନ କଟେଇ ଦେଉଥିଲେ, ଲୁଚେଇ ଲୁଚେଇ ବାପାଙ୍କ ଗୁଡ଼ିଆ ଦୋକାନରୁ ଖାଇ ଦେଉଥିଲେ, ରାଗୀମାଗିପଣ୍ଡିତଙ୍କ ଗୋଡ଼କୁ ପଥର ପକେଇ ଛୁ' କରୁଥିଲେ ।

## ବାପ୍ରେ ପଣ୍ଡିତେ !

ସେତେବେଳକୁ ଲକ୍ଷ୍ମୀନାରାୟଣ **ମାଇନର** ସ୍କୁଲର ପିଲା । ବୟସ ବାର, ଭାରି ରାଗୀ, ନବାବ ପୁଅକୁ ଜବାବ ଦେବେ, କିନ୍ତୁ ମାଷ୍ଟରଙ୍କ ପ୍ରତି ଭାରି ଭକ୍ତି । ପାଠ ପ୍ରତି ଭାରି ଶ୍ରଦ୍ଧା । ଶ୍ରେଣୀରେ ପ୍ରାୟ ସବୁ ବିଷୟରେ ପ୍ରଥମ, ଦ୍ୱିତୀୟ ହୁଅନ୍ତି, କିନ୍ତୁ ସଂସ୍କୃତରେ ପ୍ରକୃତି ପ୍ରତ୍ୟୟ ପଚାରିଲେ ହଠାତ୍ କହିପାରନ୍ତି ନାହିଁ । ଏବେ ପରିଣତ ବୟସରେ ବି କହନ୍ତି—କେମିତି କହନ୍ତି ଯେ କେହି କା' ପ୍ରକୃତିକୁ ପ୍ରତ୍ୟୟ କରିପାରିବ ? ହେଲେ ସେତେବେଳେ ଏ ଉତ୍ତର ଦେଲେ ତ ପଣ୍ଡିତେ ଛାଡ଼ିବେ ନାହିଁ । ପଣ୍ଡିତେ କିଛି ନ ବୁଝେଇ ପାଖକୁ ଡାକି ନିଅନ୍ତି ଓ ମୁଣ୍ଡ ବାଳକୁ ଝିଙ୍କି ମୁଣ୍ଡରେ ଟାଏଁଟାଏଁ କରି ବଙ୍କା ଆଙ୍ଗୁଠିରେ ମାରନ୍ତି । ଲକ୍ଷ୍ମୀନାରାୟଣଙ୍କ ଆଖି ଛଳଛଳ ହେଇଯାଏ । ଦେଖୁ ଦେଖୁ ସେ ଭେଁଭେଁ କାନ୍ଦି ପକାନ୍ତି । କହନ୍ତି—ମତେ ବେତରେ ମାରନ୍ତୁ ପଛେ, ସେ ବଙ୍କା ଆଙ୍ଗୁଠିରେ ମାରନ୍ତୁ ନାହିଁ, ମତେ ଭାରି କାଟୁଛି । ପଣ୍ଡିତେ କି ଶୁଣିବା ଲୋକ !

ଦିନକର—ଲକ୍ଷ୍ମୀନାରାୟଣଙ୍କର ରାଗ ପହଂଚିଲା ପଞ୍ଚମରେ । ଚାରିଟା ବାଜିଲା । ଛୁଟି ହେଲା । ପିଲାମାନେ ବାହାରିଗଲେ । ପଣ୍ଡିତ ମହାଶୟ ପଛରେ ଧୀରେ ଧୀରେ ଆସୁଥାଆନ୍ତି । ଯେମିତି ଆସି ଲକ୍ଷ୍ମୀନାରାୟଣଙ୍କ ଘର ପାଖରେ

ପହଂଚିଗଲେ, ଲକ୍ଷ୍ମୀନାରାୟଣ ତ ଛକିଥିଲେ, ଗଛ ଉହାଡରୁ ଗୋଟାଏ ପ୍ରକାଣ୍ଡ ପଥର ଉଠେଇ (ଯେତେ ବଡ ତାଙ୍କ ପକ୍ଷରେ ସମ୍ଭବ) "ଶଳା ପଣ୍ଡିତ" କହି ପଣ୍ଡିତଙ୍କ ଗୋଡ଼ରେ ଖୁବ୍ ଜୋର୍‌ରେ ଫିଙ୍ଗିଦେଇ ଛୁ' !! ପଣ୍ଡିତେ ଛଟପଟ ହେଉଛନ୍ତି, ମରିଗଲି ମରିଗଲି ବୋଲି ଚିତ୍କାର କରୁଛନ୍ତି, ଆଉ ଲକ୍ଷ୍ମୀନାରାୟଣ କାହିଁ ?

## ଧନେ ଟଙ୍କାଏ ଚୋର୍ !

ଏଇ ଦୁଷ୍ଟ ଦିନେ ମୋତିଗଞ୍ଜ ବଜାରରେ କୈଳାଶ ଦୋକାନରେ ମାଉଁସ ଖାଇବ ବୋଲି ବାପାଙ୍କ ପେଟେଇରୁ ଗୋଟିଏ ଟଙ୍କା ଚୋରିକଲେ । ମୋହିନୀ ତାଙ୍କ ସାଙ୍ଗ । ତା' ସହିତ ମିଶି ବେଶ୍ ମଉଜରେ ମାଉଁସ ଖାଇଲେ । କିନ୍ତୁ ଶେଷରେ ଧରପଡ଼ି ମା'ଠଉଁ କଠୋର ଦଣ୍ଡ—ମାରିଷ ଖଡ଼ାରେ ସପାସପ୍ ପାଞ୍ଚ ଛଅ ଚାବୁକ୍ ମା' ପିଟି ଦେଇଗଲେ ହାତରେ । ଝର୍‌ଝର୍ ଲୁହ ବହିଗଲା ଆଖିରୁ । ସମସ୍ତ ଶରୀର, ମନ, ଆତ୍ମା ସେ ଚାବୁକ୍‌ର ଅନୁଭୂତି ପାଇଲା । ରାଗରେ ନ ଖାଇ, ନ ପିଇ ଘରୁ ପଳେଇଲେ । କୌଣସି ବାବାଜି ଦେଖିଲେ ତା' ସହିତ ଚେଲା ହେଇ ଯିବେ ନଇଲେ ଆତ୍ମହତ୍ୟା କରିବେ ବୋଲି ସ୍ଥିର କଲେ ।

ଚାଲି ଚାଲି ଅନେକ ବାଟ ଚାଲିଗଲେ । ଗୋଟିଏ ଗାଁରେ ପୋଖରୀ କୂଳରେ ପହଂଚିଲେ । ସେଠାରେ ଜଣେ ଗ୍ରାମବଧୂ କଳସୀ ଧରି ଆସୁଥିଲେ । ସେ ବାଲେଶ୍ୱର ବାରବାଟୀର ଝିଅ । ସେଇ ଗାଁରେ ବିବାହ କରିଛି । ସେ ଚିହ୍ନିପାରିଲା । ଡରି ଯାଇଁ ପଚାରିଲା—ନକ୍ଷି, ତୁ ଏଠି ? ରାଗିକି ଆସିନାହୁଁତ ? ନକ୍ଷି କହିଲେ—ନା, ମୋ ସାଙ୍ଗମାନଙ୍କ ସାଙ୍ଗରେ ଆସିଛି । ବଧୂଟି ତା' ବାଟରେ ଗଲା । ସେ ସ୍ଥାନ ନିରାପଦ ନୁହେଁ ଭାବି ଲକ୍ଷ୍ମୀନାରାୟଣଙ୍କର ଦେ' ଦୌଡ଼. ଦେ' ଦୌଡ଼ ! ମୋହିନୀର ଆଇ ବହୁତ ବୁଝେଇବାରୁ ଦୁଇ ଦିନ ପରେ ଘରକୁ ଫେରିଲେ । ମା', ବାପା, ଦି' ଭଉଣୀ—କଦମ୍, କୃଷ୍ଣମଣି—ସେତେବେଳେ କାନ୍ଦିକାନ୍ଦି ଅସ୍ଥିର ହେଇ ବିଛଣାରେ ପଡ଼ିଛନ୍ତି ।

## ପୁଣି ଥରେ ଏଗାର ଶହ ଟଙ୍କା ଚୋରି !

ଅବଶ୍ୟ ଲକ୍ଷ୍ମୀନାରାୟଣ ନିଜେ ଏ ଟଙ୍କା ଚୋରି କରିନାହାନ୍ତି, କିନ୍ତୁ ଚୋରିଧନରେ ଭାଗୀ ହୋଇଛନ୍ତି । ଲକ୍ଷ୍ମୀନାରାୟଣ ପିଲାଦିନୁ ଗୁଡ଼ିଉଡ଼ାରେ ଧୂରନ୍ଧର । "ଗୁଡ଼ିଉଡ଼ାରେ ମୁଁ ଗୋଟାଏ ଆଲେକ୍‌ଜାଣ୍ଡର" —ସେ ନିଜେ କହନ୍ତି, "ସେହି ଗୁଡ଼ିଉଡ଼ା ପାଇଁ ପଇସା ଦରକାର । ମାତ୍ର ସବୁବେଳେ ପଇସାରେ କାଣ୍ଡକୁଣ୍ଡ । ଦୋକାନରୁ ପଇସା ଆଣିଲେ ବାପା ଚିଡ଼ନ୍ତି ।" ଦିନେ ଲକ୍ଷ୍ମୀନାରାୟଣଙ୍କ ମାଉସୀ ପୁଅ ଭାଇ 'ଫକ' ଏଗାରଶହ ଟଙ୍କା ଚୋରି କରି ନେଇଆସିଲା ଘରୁ—କହିଲେ ନଖି ଭାଇ, ଟଙ୍କା ମାଗୁଥିଲୁ ପରା ? ନେ । ଲକ୍ଷ୍ମୀନାରାୟଣଙ୍କୁ ପ୍ରଥମେ ଡ଼ର ମାଡ଼ିଲା । ଏତେଗୁଡ଼ାଏ ଟଙ୍କା ରଖିବେ ? ରଖିବା ଠିକ୍ ହବ ? ବାପା, ମଉସା କ'ଣ କହିବେ ? କିନ୍ତୁ ପୁଣି ଲୋଭ ହେଲା । ଗୁଡ଼ିଉଡ଼ା ଲୋଭ । ମାଉଁସଖିଆ ଲୋଭ । ଟଙ୍କା ନେଇ ଓଳଦା ସାହି ଦରଜୀ ଟୋକା ଜଗନ୍ନାଥ ପାଖରେ ରଖିଲେ । ସେଠୁଁ ନେଇ ଧୋବା ଟୋକା ଉଦିଆ ପାଖରେ, ତା'ଠୁଁ ନେଇ ବୃନ୍ଦାବନ ରଣା ପାଖରେ ରଖିଲେ । ଏମିତି ସାତଘର ସାତପର କରି କରି ଶେଷରେ ପଚିଶ ଦିନରେ ଏଗାର ଶହ ଟଙ୍କା ଖରଚ ହୋଇ ହୋଇ ପଚିଶ ଟଙ୍କାରେ ରହିଲା ।

ଫକକୁ ଏଗାର ବର୍ଷ, ଲକ୍ଷ୍ମୀନାରାୟଣଙ୍କୁ ବାର ବର୍ଷ । ଏଇ ଦି'ଟା ଅଣ୍ଡା ଦ୍ୱାରା ଏତେବଡ ଚୋରି ହୋଇପାରେ, କେହି କଳ୍ପନା କରିପାରିଲେ ନାହିଁ । ତେଣୁ ଏମାନେ ନିଶ୍ଚିନ୍ତରେ ସାଙ୍ଗସୁଖ ହୋଇ ଗୁଡ଼ି ଉଡେଇ, ପାରା ଉଡ଼େଇ, ବଜାରରେ ଅଣ୍ଡା, ମାଉଁସ ଖାଇ ଆନନ୍ଦରେ ଟଙ୍କା ଉଡ଼େଇଲେ । କେହି ଜାଣି ପାରିଲେ ନାହିଁ । କିନ୍ତୁ ଦିନଦିନ ଇସ୍କୁଲ ନଯାଇ, ଘରେ ନ ଖାଇ ସବୁବେଳେ ସାଙ୍ଗମାନଙ୍କ ସାଙ୍ଗରେ ଅଯଥାରେ ବୁଲୁଛି, ଗୁଡ଼ି ଉଡ଼ଉଛି ଦେଖି ମା' ସନ୍ଦେହ କଲା । ଦିନେ ମାଳିପଦାରେ ଗୁଡ଼ି ଉଡଉଛି, ମା' ଯାଇଁ ଧଇଲା କାନକୁ । କାନ ମୋଡ଼ି ଘୋଷାରି ଘୋଷାରି ଆଣିଲା । କହିଲା— "ଆଜି ତୋତେ ଟାଙ୍ଗି ଶୁଖୁଆ କରିବି, ଚାଲ୍ ଘରକୁ । ତୁ କେଉଁଠି କେଉଁ ଦୋକାନରୁ ଚୋରି କରୁଛୁ ?" (ମୋ ବାରବୁଲା ଜୀବନ—ପୃ ୨୬) । ମା'ର ଏଇ ଜୀଅନ୍ତା କାଳୀ ରୂପ ଦେଖି ପୁଅ ଛାନିଆରେ କହି ପକେଇଲା—"ମୁଁ ଚୋରି କରିନାହିଁ, ଫକ ଚୋରି କରିଛି ।"

ଏଗାର ଶହ ଟଙ୍କାର ସନ୍ଧାନ ମିଳିଲା । ଗୋବିନ୍ଦ ମାମୁଁ ଲୁହା ଚଟୁ ଗରମ କରି ନଷି କି, ଫକକୁ ଡ଼ରେଇଲେ—ବଦ୍‌ମାସ୍ ଟୋକା, ଏକ ଘପଡ଼ା ଦେବି ଏହି ଗରମ ଲାଲ୍‌ଚଟୁରେ ଯେ ତମ ଘେରି ଜୀବନଭରି ଛଡ଼େଇ ଦେବି । ଡ଼ରରେ ପିଲା ଦି'ଟା ଲୁଗାରେ ମୂତି ପକେଇଲେ । ଖାଲି ବୋବାଳି ଛାଡ଼ିଲେ —ମା'...ମା'...ମା...ମା...ମା' ଆଉ ଏପରି କାମ କରିବୁ ନାହିଁ । ଗୋବିନ୍ଦ ମାମୁଁ ତାଙ୍କୁ ଅଗଣାରେ ନାକରେ ଘୁଷୁରିବାକୁ କହିଲେ, ଏମାନେ ଘୁଷୁରିଲେ; ଛେପ ପକେଇବାକୁ କହିଲେ. ଏମାନେ ଛେପ ପକେଇଲେ; ପୁଣି ସେହି ଛେପ ଘଟିବାକୁ କହିଲେ, ଏମାନେ ଛେପ ଘଟିଲେ, ନାକ ଘଷିଲେ, ପ୍ରତିଜ୍ଞା କଲେ ଆଉ ଘେରି କରିବେ ନାହିଁ । ଲକ୍ଷ୍ମୀନାରାୟଣ କହନ୍ତି—ସେହିଦିନୁ ମୁଁ ଏକ ପ୍ରକାର ଘେରି ଛାଡ଼ିଦେଲି ।

## ଗୁଡ଼ି ଉଡ଼ା, ପାର ଉଡ଼ା :

ଯେତେବେଳେ ସେ ମାଇନର ସ୍କୁଲରେ ଓ ବାଲେଶ୍ୱର ଜିଲ୍ଲା ସ୍କୁଲରେ ପଢୁଥିଲେ, ଗୁଡ଼ିଉଡ଼ା ତାଙ୍କର ଏକ ବଡ଼ ନିଶା ଥିଲା । ଏପରିକି ରାତି ନଅଟା ଦଶଟା ପର୍ଯ୍ୟନ୍ତ ପଢୁଁ ପଢୁଁ ଗୁଡ଼ି ଉଡାଉଥିଲେ, ଅର୍ଥାତ୍ ସଂଜରେ ଗୁଡ଼ିକୁ ନ ଉତାରି, ଯଦି ଗୁଡ଼ି ଭଲ ଉଡୁଥାଏ, ସେହିପରି ରଖି ଦେଇ ଆସୁଥିଲେ । ଚରଖିଟାକୁ ମଝିରେ ମଝିରେ ଧରି ସୂତା ଟାଣି ଦେଖନ୍ତି ଗୁଡ଼ି ଉଡୁଛି କି ନା । ଦିନେଦିନେ ଗୁଡ଼ି ଉଡ଼ାଇ ଅନ୍ୟର ଷାଠିଏ, ସତୁରି, ଅଶୀ ପର୍ଯ୍ୟନ୍ତ ଗୁଡ଼ି କାଟି ଦିଅନ୍ତି ଏବଂ ସେଦିନ ଆଲେକ୍‌ଜାଣ୍ଡର୍ ପରି ନିଜକୁ ଭାବନ୍ତି ।

ଗୁଡ଼ିଉଡ଼ା ଛଡା ଗୁଲିଖେଳ, ପାରଉଡା, କୁସ୍ତିକସରତ, ନଇପହଁରା, ଡ଼ଙ୍ଗା ବାହିବା, ଆଉ ପୂଜାପାର୍ବଣରେ ଭେଜି କରିବା ଏହାହିଁ ଥିଲା ତାଙ୍କର ବଡ ସଉକ୍ । ତାସ୍, ପଶା ମଧ୍ୟ ଖେଳୁଥିଲେ । କିନ୍ତୁ ସବୁଠୁହି ବଡ ଝୁଙ୍କ୍ ଥିଲା ଗୁଡ଼ିଉଡା, ପାରଉଡା । ପାର ଉଡ଼ାଇ ଦେଇ ସକାଳୁଆ ସ୍କୁଲରେ ଜିଲ୍ଲା ସ୍କୁଲକୁ ଚାଲିଯାନ୍ତି । ଆଉ କ୍ଲାସରୁ ବାରମ୍ବାର ବାହାରି ଆସି ଦେଖୁଥାନ୍ତି ତାଙ୍କ ପାରସବୁ କିପରି ଉଡୁଛନ୍ତି । ଗୋଟିଏ ମଛିଆ ମାଦି ପାର ପାଇଁ ତିନିଦିନ କାନ୍ଦିଥିଲେ ଅବିରତ । ଯୋଗ୍ୟ ପୁତ୍ରର ଅପମୃତ୍ୟୁ ହେଲେ ଯେଉଁ ଦୁଃଖ ହୁଏ, ସେହିପରି ଦୁଃଖ ବା ତତୋଧିକ ଦୁଃଖ ବା ଅବସାଦ ହୋଇଥିଲା

ତାଙ୍କର, ଯେଉଁଦିନ ସକାଳେ ଦେଖିଲେ ଯେ ତାଙ୍କର ଅଢ଼େଇ କଳିର ମଛିଆ ମାଦିକୁ ମାହୁଆ ଖାଇଯାଇଛି । ମଛିଆ ମାଦି ଛୁଆଟି ସକାଳୁ ଉଡ଼ିଲେ ଦିନ ଅଢ଼େଇଟା ତିନିଟା ପର୍ଯ୍ୟନ୍ତ ଆକାଶରେ ଥାଏ, ତା'ପରେ ତା' ମୁନିବ ଲକ୍ଷ୍ମୀନାରାୟଣଙ୍କ ପାଖକୁ ଫେରିଆସେ । ଏପରି ପାରକୁ ମାହୁଆ ଖାଇଗଲେ କିଏ ଧୈର୍ଯ୍ୟ ଧରି ପାରିବ ?

## ନଈ ପହଁରା, ସମୁଦ୍ର ପହଁରା :

ଏସବୁ ଛଡ଼ା ପହଁରିବାରେ ସେ ଭରି ପ୍ରିୟ, ଭରି ପଟୁ । ସେ କହନ୍ତି—'ପହଁରିବାରେ ସାଙ୍ଗ ଥିଲେ ମୁଁ ମରିଯିବି ପଛେ ଆଗକୁ ଆହୁରି ଆଗକୁ ଯିବାକୁ ଯେପରି ହଟି ନ ଯାଏ, ଏହି ଆକାଙ୍କ୍ଷା ମୋର ବରାବର ଥିଲା । ଅନ୍ୟାନ୍ୟ ଖେଳ ମୁଁ ଖେଳୁଥିଲି, କିନ୍ତୁ ଏପରି ଆସକ୍ତ ନ ଥିଲି ।' ବୁଢ଼ାବଳଙ୍ଗ ନଈକୂଳରେ ତାଙ୍କ ଘର । ବୁଢ଼ାବଳଙ୍ଗ ନଈ ଓଳନ୍ଦା ସାହିରେ ନାଳ ଭଳିଆ ପଶିଯାଇଛି । ସେଇଠି ସେ ପହଁରା ଶିଖିଥିଲେ । ପୁଣି ଏଇ ବୁଢ଼ାବଳଙ୍ଗ ନଈଟି ଜୁଆରିଆ ନଈ । ନଈରେ ଜୁଆର ଆସିଲେ ବୁଢ଼ାବଳଙ୍ଗ ଖୁବ୍ ଭରପୂର ହୋଇଯାଏ । ଆଉ ଲକ୍ଷ୍ମୀନାରାୟଣଙ୍କର କି ଆନନ୍ଦ ସେଇ ନଈରେ ପହଁରିବାକୁ ! ସେଥିରେ ଚିତ୍‌ପହଁରା ଦେଉଦେଉ ନଈ ଏ ପାରିରୁ ସେ ପାରିକୁ ଚାଲିଯାନ୍ତି । ପୁଣି ଫେରି ଆସନ୍ତି । ଟିକିଏ ବି ଡ଼ର ଭୟ ନାହିଁ ।

ଲକ୍ଷ୍ମୀନାରାୟଣ ନିଜେ କହନ୍ତି—

"ଏଇ ନଈ-ପହଁରା-ନିଶା ମୋ ଜୀବନରେ ଏତେ ବେଶୀ ହୋଇଥିଲା ଯେ ଯେଉଁଠି ଭଲ ନଈ ଦେଖେ, ସେଠି ଏପାଖ-ସେପାଖ ହେବା ପାଇଁ ଭରି ଇଚ୍ଛା ହୁଏ । ଏହାରି ଫଳରେ ମୁଁ ୧୯୨୧ ଖ୍ରୀଷ୍ଟାବ୍ଦରେ ଶିବ୍‌ପୁର୍‌ରେ ଇଂଜିନିୟରିଂ କଲେଜରେ ପଢୁଥିଲା ବେଳେ ଅନ୍ୟାନ୍ୟ ପିଲମାନେ ଯେତେ-ବେଳେ ଫୁଟୁଛୁ ଫୁଟୁଛୁ କୂଳଠାରୁ ଟିକିଏ ଦୂରକୁ ଚାଲିଗଲେ ନିଜକୁ ବଡ଼ ବୀର ବୋଲି ଭାବନ୍ତି, ସେତେବେଳେ ମୁଁ ଶିବ୍‌ପୁରରୁ ଖିଦିରପୁର ପର୍ଯ୍ୟନ୍ତ ସମସ୍ତ ନଈ ପହଁରି ପୁଣି ଖିଦିରପୁରରୁ ପହଁରି ପହଁରି ଆସି ଶିବ୍‌ପୁର୍‌ରେ ଉପସ୍ଥିତ ହୁଏ । ପରବର୍ତ୍ତୀ ଜୀବନରେ ମୁଁ ଓଡ଼ିଶାର ଏବଂ ଭାରତବର୍ଷର ଅନେକ ନଈ ପହଁରିଛି ଏବଂ ଏପାରି-ସେପାରି ମଧ୍ୟ ହୋଇଛି ।

ଏଲହାବାଦ୍‌ରେ ଗଙ୍ଗା-ଯମୁନାରେ ପହଁରିବା ମୋର ଗୋଟାଏ ବଡ଼ ବ୍ୟସନ ଥିଲା । ମୁଁ ପୁରୀ-ସମୁଦ୍ରରେ ଆଠମାଇଲ ପର୍ଯ୍ୟନ୍ତ ଭିତରକୁ ପହଁରିଛି ।...

"ପୁଣି ବୁଲିବା ମୋର ଆଉ ଏକ ଆକାଙ୍କ୍ଷା । ଜଣା ଗଇଜ ଛାଡ଼ି ଅଜଣା ଗଇଜକୁ ଧାଇଁଯିବା ମୋର ପ୍ରବଳ ବାସନା । ସେଥିପାଇଁ ମୋର ମା'ଙ୍କର କଡ଼ା ତାଗିଦ୍ ଥିଲେ ମଧ୍ୟ ଏକ ଦମ୍‌ରେ ବାରବାଟୀରୁ ଗୁନ୍ଦିପୁର (ଆଠ ମାଇଲ୍) ଦୌଡ଼ି ଯାଇଁ ଦୌଡ଼ି ଆସିଛି—ସମୁଦ୍ର ଦେଖି ଆସିଛି । ବାଲେଶ୍ୱରରୁ ମିତ୍ରପୁର (ପଶ୍ଚିମରେ ଆଠ ମାଇଲ୍) ଦୌଡ଼ିଯାଇଁ ଦୌଡ଼ିଗଲା ପରି ପାହାଡ ଦେଖି ଆସିଛି—ଟିକିଏ ଜଙ୍ଗଲରେ ବୁଲିଛି—ଟିକିଏ ପାହାଡ ଉପରକୁ ଉଠିଛି—ପଳାଇ ଆସିଛି ।"

( ମୋ ବାରବୁଲା ଜୀବନ—ପୃ ୩୪ )

## ଭାଙ୍କ ନିଶା ସେବନ :

ତାଙ୍କ ବାପା ହୁକା ଖାଉଥିଲେ । ପିଲାଦିନେ ଲକ୍ଷ୍ମୀନାରାୟଣ ତାଙ୍କ ପାଇଁ ଗୁଡାଖୁ ସଜେଇ ହୁକାରେ ଚଢେଇ ଧୂଆଁ ପିଇବାକୁ ଦିଅନ୍ତି । ଦିନକର ମନହେଲା ସେ ଟିକିଏ ପିଅନ୍ତେ । ଯେମିତି ନଳୀ ପାଟିରେ ଦେଇ ସେ ଦମେ ଟାଣି ନେଇଛନ୍ତି, ମା' କୋଉଁଠି ଥେଲା ଧାଇଁ ଆସିଲା, କହିଲା—ନଖି, ତୁ ଧୂଆଁ ପିଉଛୁ ? ଲକ୍ଷ୍ମୀନାରାୟଣ ଚଟ୍‌ପଟ, କହିଲେ...ନା । ମା' କହିଲା—ଆଁ କର, ତୋ ପାଟି ଦେଖେଁ ।...ସେ ଶୁଙ୍ଘିଲା । ତା'ପରେ ଠୋ' କିନା ଏକ ଚଟକଣା କଷିଦେଲା । 'ସେହିଦିନୁ ମୁଁ କେବେ ହୁକା ଟାଣି ନାହିଁ ।'—ଲକ୍ଷ୍ମୀନାରାୟଣ କହନ୍ତି ।

ଥରେ ତାଙ୍କର ଜଣେ ଶାଳକ, ଯିଏ ତାଙ୍କଠାରୁ ବୟସରେ ବଡ଼, ତାଙ୍କୁ ଭୁଲାଇ କରି ନେଇ ଯାଇଥିଲା ତଟକା ଖଜୁରି ରସ ଖୁଆଇବା ବାହାନାରେ । 'କିନ୍ତୁ ମୁଁ ଗଲି ଯେଉଁଠାକୁ ସେ ତାଡ଼ିଖଟି । ସେଠି ସେ ତାଡ଼ିର ଗନ୍ଧ ଏବଂ ସେ ଲୋକମାନଙ୍କର ବସିବାର ଭଙ୍ଗୀ ଦେଖି ମୁଁ ଛି' ଛି' କରି ପଳେଇ ଆସିଲି ଏବଂ ସେହିଦିନ ଠାରୁ ମୋର ଶାଳକଙ୍କ ସାଙ୍ଗରେ ମୁଁ ଆଉ ଚାରି ପାଞ୍ଚ ବର୍ଷ କଥା କହିନଥିଲି ।'

ପିଲାଦିନେ ଦୁଇ ଚାରି ଥର ସେ ଗଞ୍ଜେଇ ଖାଇଛନ୍ତି । ତାହା ମଧ୍ୟ ତାଙ୍କର ନିଜ ଇଚ୍ଛାରେ ନୁହେଁ । କେହି କେହି ଗୁରୁସ୍ଥାନୀୟ ଲୋକ 'ସିର୍ଦ୍ଧି ଖାଇଲେ ବୁଦ୍ଧି ବଢ଼େ' କହି ତାଙ୍କୁ ବେଲପଣାରେ ଗଞ୍ଜେଇ ଦେଇଛନ୍ତି । "ଗଞ୍ଜେଇ ନିଶାର ତୁଳୁତୁଳିଆ ପଣ ମୁଁ ଅନୁଭବ କରିଛି ଏବଂ ଆକାଶିଆ ସ୍ୱପ୍ନ ମଧ୍ୟ ଦେଖିଛି ଏବଂ ଜଣେ ଜଣେ ଅତିରିକ୍ତ ଗଞ୍ଜେଇ ଖାଇ ବାଇଆ ହେବାର ମଧ୍ୟ ଦେଖିଛି । ମଦ ମୁଁ କେବେ ମଧ୍ୟ ଖାଇନାହିଁ ।" ଲକ୍ଷ୍ମୀନାରାୟଣ ନିଜେ ଲେଖିଛନ୍ତି ତାଙ୍କ ଆତ୍ମଜୀବନୀରେ ।

(ମୋ ବାଉଳା ଜୀବନ–ପୃ. ୪୦)

## ଗୁଡ୍ କନ୍‌ଡକ୍ଟ ଆଉ ସିଗାରେଟ୍ !!

ଯେତେବେଳେ ତାଙ୍କୁ ବାର ବର୍ଷ ସେ ସିଗାରେଟ୍‌ଖିଆ ଆରମ୍ଭ କଲେ । ବାଲେଶ୍ୱର ସହର ଜାଗା, ସିଗାରେଟ୍ ବି ସେତେବେଳେ ଶସ୍ତା । ବହୁ ଲୋକ ବିଶେଷତଃ ବାବୁଭୟା ସିଗାରେଟ୍ ଖାଆନ୍ତି । ତେଣୁ ଲକ୍ଷ୍ମୀନାରାୟଣଙ୍କ ସିଗାରେଟ୍‌ଖିଆ କିଛି ବିଚିତ୍ର ନୁହେଁ । ଦିନକୁ ଗୋଟାଏ ଗୋଟାଏ ପ୍ୟାକେଟ୍ ପୂରା ଫୁଙ୍କି ଦେଉଥିଲେ । ଆଉ ଏଥିପାଇଁ ପଇସା ଆଣୁଥିଲେ କୋଉଠୁଁ ? ବାପାଙ୍କ ଦୋକାନରୁ–ଚୋରି କରି ! କିନ୍ତୁ ଦିନେ ଗୋଟାଏ ମଜା କଥା ହେଲା ।

ମାଇନର ପାଶ୍ କରି ବାଲେଶ୍ୱର ଜିଲ୍ଲା ସ୍କୁଲରେ ଭର୍ତ୍ତି ହେଇଥାଆନ୍ତି । ୧୯୦୬ ସାଲର କଥା । ସପ୍ତମ ଶ୍ରେଣୀରୁ ଅଷ୍ଟମଶ୍ରେଣୀକୁ ପ୍ରମୋଶନ ପାଇଲେ । ସ୍କୁଲରେ ପୁରସ୍କାର ବିତରଣୀ ଉତ୍ସବ ହେଲା । ଲକ୍ଷ୍ମୀନାରାୟଣ ତ ଭଲ ଛାତ୍ର । ସବୁ ବିଷୟରେ ପ୍ରଥମ, ଦ୍ୱିତୀୟ ହୁଅନ୍ତି । ତେଣୁ ତାଙ୍କୁ ଅନେକ ଗୁଡ଼ିଏ ପୁରସ୍କାର ମିଳିଲା । ଛୋଟ ପିଲାଟିଏ ସେ ସେତେବେଳେ । କିନ୍ତୁ ପୁରସ୍କାର ଏତେ ମିଳିଲା ଯେ ସେତକ ସେ ଏକାଥରକେ ଆଣି ପାରିଲେ ନାହିଁ, ଦୁଇଥରରେ ଆଣିଲେ । ତଥାପି ବହି ତଳେ ପଡି ଯାଉଥାଏ । ତାଙ୍କ ବହି ସବୁ ଦର୍ଶକ ସଭ୍ୟ କେହି କେହି ତାଙ୍କ ହାତକୁ ଉଠାଇ ଦେଉଥାଆନ୍ତି । 'ଭଲ ପଢିବ, ବେଶୀ ପଢିବ' କହୁଥାନ୍ତି । ଲକ୍ଷ୍ମୀନାରାୟଣ ହଁ ଭରି ଗୁଲିଆସୁଥାନ୍ତି । ହଠାତ୍ ଗୋଟିଏ ପ୍ରାଇଜ୍ ମିଳିଲା–Good Conduct Prize–ଚେମ୍ବର୍

ଡିକ୍‌ସିନାରିଟିଏ । ଆଉ ଲକ୍ଷ୍ମୀନାରାୟଣଙ୍କୁ ଦେଖେ କିଏ ? ସେ ଅସ୍ଥିର ହୋଇ ଗଲେ, ଉନ୍ମାଦ ହୋଇଗଲେ, ତାଙ୍କର ଆପାଦମସ୍ତକ ଥରିଉଠିଲା ।

"ମୁଁ ଗଲି । ପ୍ରାଇଜ୍ ଆଣିଲି । କିନ୍ତୁ ସେଦିନ ରାତିସାରା ମୁଁ କାନ୍ଦିଛି । ମୁଁ ଗୁଡ୍ କଣ୍ଡକ୍ଟ ପ୍ରାଇଜ୍ ପାଇଛି, ଅଥଚ ମୁଁ ଲୁଚି ଲୁଚି ସିଗାରେଟ୍ ଖାଏ ! ସିଗାରେଟ୍ ଖାଏ !!

ଏହି ଚିନ୍ତାରେ ମୁଁ ତିନି ଦିନ ଭାତ ଖାଇନାହିଁ । ତିନି ଦିନ ପରେ ଅଥବା ସେହିଦିନଠାରୁ ଯେ ସିଗାରେଟ୍‌ଖିଆ ଛାଡ଼ିଛି, ଆଜି ଛଅଷଠି ବର୍ଷ ବୟସ ହେଲା, ଆଉ ସିଗାରେଟ୍ ଖାଇନାହିଁ ।"

—'ମୋ ବାଉଳା ଜୀବନ'—ପୃ ୪୧

## ନଗିବାବୁ ହଗି ହଗି ମରୁ !

ଅଦ୍ଭୁତ ଲକ୍ଷ୍ମୀନାରାୟଣ । ଅଦ୍ଭୁତ ତାଙ୍କ କାମ । ବାଲେଶ୍ୱର ଜିଲ୍ଲା ସ୍କୁଲରେ ଜଣେ ଡ୍ରିଲ୍ ଶିକ୍ଷକ ଥାଆନ୍ତି—ନଗେନ୍ ବାବୁ । ଭଲ ଡ୍ରିଲ୍ ଶିଖାନ୍ତି । କିନ୍ତୁ ଭାରି କଡ଼ା ଲୋକ, ଟିକିଏ ଭୁଲ୍‌ଭାଲ୍ ହେଲେ ଦୁମ୍‌ଦାମ୍ ମାଡ଼ । ଲକ୍ଷ୍ମୀନାରାୟଣଙ୍କର ଜଣେ ବନ୍ଧୁ ଥିଲେ—ଜଗତ୍ । ଦିହେଁ ଭାରି ଦୋସ୍ତ । ଥରେ ଜଗତ୍ ଡ୍ରିଲ୍‌ରେ କ'ଣ ଟିକିଏ ଭୁଲ୍ କରିବାରୁ ନଗେନ୍‌ବାବୁ ତା' ପିଠିରେ ଏମିତି ଗୋଟାଏ ଗୁମ୍‌କରି ବିଧା ମାଇଲେ ଯେ ଜଗତ୍ ହଗି ପକେଇଲା । ଲକ୍ଷ୍ମୀନାରାୟଣ ତ ମହା ବଦ୍‌ରାଗୀ, ଜଗତ୍ ବି ରାଗିଗଲା । ଏହାର ଠିକଣା ଜବାବ୍ ନଗେନ୍‌ବାବୁଙ୍କୁ ଦେବେ ବୋଲି ସ୍ଥିର କଲେ ।

ଲକ୍ଷ୍ମୀନାରାୟଣ ସେତେବେଳେ ଟିକିଏ ଟିକିଏ ତନ୍ତ୍ରବହି ପଢୁଥିଲେ । ସେ କେଉଁଠି ପଢିଥିଲେ ଯେ ହ୍ଲିଂ, କ୍ଲିଂ ସ୍ଲିଂ ଇତ୍ୟାଦି ମନ୍ତ୍ରଜପି ଅଦ୍ଭୁତ କାର୍ଯ୍ୟ-ମାନ ସାଧନା କରାଯାଇପାରେ । ଗୋଟିଏ ବହିରେ ଲେଖାଥିଲା ଯେ ଯଦି କେହି ବିବାହିତା ସ୍ତ୍ରୀ ସନ୍ତାନ ପ୍ରସବ କରିବା ପୂର୍ବରୁ ହଇଜା ବା ବସନ୍ତ ରୋଗରେ ମରିଥାଏ, ଆଉ ସେ ଶବ ପୋଡ଼ା ନହୋଇ ପୋତା ହୋଇଥାଏ, ତାହେଲେ କଳା କିଟିକିଟି ଗଭୀର ଅମାବାସ୍ୟା ରାତିରେ ମଶାଣିକୁ ଯାଉ ସେ ଶବକୁ ମାଟିତଳୁ ଖୋଳି,ତା' କାଣି ଆଙ୍ଗୁଳି ଗୋଟାଏ କାଟି,ତାକୁ ଶୁଖି ସଫା କରି ସେଇ ହାଡ଼ଟି ଧରି ଲକ୍ଷେ ହ୍ଲିଂକ୍ଲିଂସ୍ଲିଂମନ୍ତ୍ର ଜପିଲେ ତୁମର ଅନିଷ୍ଟକାରୀ

ବିରୁଦ୍ଧରେ ଯାହା ଇଚ୍ଛା କରିବ ତାହା ନିଶ୍ଚୟ ଘଟିବ । ଦୁର୍ଦ୍ଦମନୀୟ ଲକ୍ଷ୍ମୀନାରାୟଣ କି ଆଉ ଘରି ହୁଅନ୍ତି ? କଗତ୍‌କୁ ଧରି ଗଲିଲେ ବୁଢ଼ାବଳଙ୍ଗ ନଈକୂଳର ବାଲିଘାଟ ମଶାଣିକି ।

ଗୋପାଳ ଗାଁର ଗୋଟିଏ ବିବାହିତା ଝିଅ ବସନ୍ତ ରୋଗରେ ମରିଥିଲା । ଯେଉଁ ଜାଗାରେ ପୋତା ହୋଇଥିଲା, ଲକ୍ଷ୍ମୀନାରାୟଣ ତାହା ଦେଖିଥିଲେ । ତେଣୁ ଅନ୍ଧକାର ରାତ୍ରିରେ ସେଠାକୁ ଯାଇଁ ଗୋଟିଏ କୋଡ଼ିରେ ସେ ସ୍ଥାନ ଖୋଳି ଶବ ବାହାର କଲେ ଏବଂ ତା ହାତରୁ କାଣି ଆଙ୍ଗୁଳିଟି ଗୋଟିଏ ଗୁଆକାତିରେ କାଟି, ତାକୁ ସଫାକରି ଶ୍ମଶାନରେ ବସି ଲକ୍ଷେ ବାର ଜପ କଲେ—ହ୍ରିଂ କ୍ରିଂ ସ୍ରିଂ । ଆଉ ଜପ କଲାବେଳେ ପ୍ରତିଥର କହିଲେ— ନଗିବାବୁ ହରି ହରି ମରୁ, ନଗିବାବୁ ହରି ହରି ମରୁ; ନଗିବାବୁ ହରି ହରି ମରୁ । କିନ୍ତୁ ହାୟ ! ଜପ ଶେଷ ହେଲା । ରାତି ପାହି ସକାଳ ହେଲା । ଦଶ ବାଜିଲା । ସ୍କୁଲକୁ ଯାଇଁ ଦେଖନ୍ତି ନଗିବାବୁ ବେଶ୍ ଜାମାଯୋଡ଼ ହୋଇ ସ୍କୁଲରେ ହାଜର ! ଯୋଉ ତାଙ୍କାକୁ ସେଇ ତାହା ।

ଲକ୍ଷ୍ମୀନାରାୟଣ ସେହିଦିନୁ ତନ୍ତ୍ର ବହି ଫିଙ୍ଗି ଦେଲେ । ବୁଝିଲେ— ତନ୍ତ୍ର ବା ମନ୍ତ୍ରରେ କେହି ବଡ଼ ହୋଇ ପାରିବ ନାହିଁ । ବଡ ହେବ ନିଜର ପରିଶ୍ରମରେ, ଧ୍ୟାନରେ, ସାଧନାରେ, କଠିନ ତପସ୍ୟାରେ, କଠୋର ପ୍ରତିଜ୍ଞାରେ । ଆମେରିକାର କବି ଏଚ୍. ଡବ୍ଲ୍ୟୁ ଲଙ୍ଗ୍‌ଫେଲୋଙ୍କ କବିତା ତେଣୁ ସେ ବାରମ୍ବାର କହନ୍ତି—

"Height by great men reached and kept.
Were not attained by sudden flight,
They, while their companions slept,
Were toiling upward in the night."

(ଯେଉଁମାନେ ଜୀବନର ଶୀର୍ଷତମ ସୋପାନରେ ପହଂଚିଛନ୍ତି, ସେମାନେ ହଠାତ୍ ସେଠାକୁ ଉଡ଼ି ଯାଇ ନାହାନ୍ତି । ବରଂ ଯେତେବେଳେ ତାଙ୍କର ବନ୍ଧୁମାନେ ଆରାମରେ ଶେଯରେ ଶୋଇ ଶୋଇ ଘୁଙ୍ଗୁଡ଼ି ମାରୁଥିଲେ ବା ସୁଖ-ସ୍ୱପ୍ନ ଦେଖୁଥିଲେ, ସେମାନେ ସେତେବେଳେ ଆଲୋକ ଜାଳି.

ଗଭୀର ରତି_ଯାଏଁ କଠିନ ପରିଶ୍ରମ କରି ପଢୁଥିଲେ ଆଉ ଜ୍ଞାନ ଆହରଣ କରୁଥିଲେ ।)

ଏହି ଘଟଣାରୁ ଆଉ ଗୋଟିଏ କଥା ଲକ୍ଷ୍ମୀନାରାୟଣ ଶିଖିଲେ—କାହା ବିରୁଦ୍ଧରେ ପ୍ରତିଶୋଧ ନେବା ଅତି ହୀନ କର୍ମ । ପ୍ରତିଶୋଧ ନିଏ ପଶୁ—କୁକୁର କୁକୁରକୁ କାମୁଡ଼ି ଦିଏ । ମଣିଷ କ'ଣ ମଣିଷକୁ କାମୁଡ଼େ ? ଆଉ ଯିଏ କାମୁଡ଼େ, ସିଏ କ'ଣ ମଣିଷ ? ଗାନ୍ଧୀ କାମୁଡ଼ିଥିଲେ ? ଯୀଶୁ କାମୁଡ଼ିଥିଲେ ? ଚୈତନ୍ୟ କାମୁଡ଼ିଥିଲେ ? ଯୀଶୁ ପରା କହିଥିଲେ—

"Father ! forgive them, for they know not what they do."

(ହେ ପରମପିତା ! ସେମାନଙ୍କୁ କ୍ଷମା କର । ସେମାନେ ଜାଣନ୍ତି ନାହିଁ, କ'ଣ ସେମାନେ କରୁଛନ୍ତି ।)

ଲକ୍ଷ୍ମୀନାରାୟଣ କ'ଣ ଯୀଶୁ ହେବେନାହିଁ ? ଜଗାଇ, ମାଧାଇଙ୍କୁ କୋଳ କରିବେ ନାହିଁ ଶ୍ରୀଚୈତନ୍ୟଙ୍କ ଭଳି ? ତେଣୁ ସେ ପରଜୀବନରେ ଲେଖିଲେ—

"ସୁନ୍ଦର ମାନବ ଭଇ ଅସୁନ୍ଦର ହୁଅ ନାହିଁ,
ଦୁଇଦିନ ପାଇଁ ଦମ୍ଭ ଅଭିମାନ
କ୍ରୋଧ ଅହଂକାର ଛାଡ଼ ଭଇ,
ସୂର୍ଯ୍ୟ ସମ ଦୀପ୍ତ ହୁଅ ଶଶୀ ସମ ଶାନ୍ତ
ସ୍ନେହ ଦିଅ ବିତରି ଜଗତ ଜନେ କର ଦାନ୍ତ ।
ଏଠି ପ୍ରତିଶୋଧ କାହିଁ ?"

(ଲକ୍ଷ୍ମୀନାରାୟଣ ଗ୍ରନ୍ଥାବଳୀ—ପୃ ୭୩)

ଏଠି ପ୍ରତିଶୋଧ କାହିଁ ?

## ଗୋପିଆ ହାଡ଼ିର ଗୋଡ଼ ତଳେ !

ଆଉ ଏକ କୌତୁକ କଥା ତାଙ୍କ ଜୀବନର । ୧୯୦୮ ମସିହା କଥା । ଦଶହରା ହୋଇଥାଏ । ଲକ୍ଷ୍ମୀନାରାୟଣ ନୂଆ ଲୁଗା, ନୂଆ ଜାମା ପିନ୍ଧିଥାନ୍ତି । ମା' କହିଲେ—"ଯା, ତୋ ଶାଶୁ ଶଶୁରଙ୍କୁ ଜୁହାର ହେଇ ଆସିବୁ ।"

ଲକ୍ଷ୍ମୀନାରାୟଣଙ୍କୁ କେମିତି କେମିତି ଲାଗିଲା । ସେ ଟିକିଏ ଥଙ୍ଗ ଥଙ୍ଗ ହେଲେ । ଏତିକିରେ ମା' ରାଗିଯାଇଁ କହିଲେ–'ଯେ ପାଠ ପଢ଼ି ଗୁରୁଜନଙ୍କ ଗୋଡ ତଳେ ପଡ଼ିବାକୁ ଲାଜ କରେ, ତା' ପାଠପଢ଼ାରେ ମୁଁ ମୁତିଦିଏ !'

ଲକ୍ଷ୍ମୀନାରାୟଣଙ୍କୁ କଥାଟା ବାଧିଲା । ସେ ଟିଂଟିଂ ହେଇ ଘରୁ ବାହାରି ଆସିଲେ । ସେତେବେଳକୁ ଗୋପିଆ ହାଡ଼ି ତାଙ୍କ ଘର ବାଟ ଦେଇ ଯାଉଥିଲା । ତା' ଉପରେ ଯେମିତି ଆଖି ପଡ଼ିଛି, ଲକ୍ଷ୍ମୀନାରାୟଣ ଲମ୍ବ ହେଇ ତା' ଗୋଡ ତଳେ ପଡ଼ିଗଲେ । ଗୋପିଆ ବୁଢ଼ା ଆପା ଆପା ହେଇ ରହିଗଲା । ମାତ୍ର କହିଲା–'ତୋର କୋଟି ପରମାୟୁ ହେଉ ।' ଲକ୍ଷ୍ମୀନାରାୟଣଙ୍କ ବାପା, ମା' ଘରୁ ବାହାରି ଆସି ଏ ଦୃଶ୍ୟ ଦେଖି ତଟସ୍ଥ ହେଇ ରହିଗଲେ । ମା' କହିଲେ–'ତୋର ଟିକେ ବୁଦ୍ଧି ନାହିଁ । ହାଡ଼ିଟା ଗୋଡ ତଳେ ପଡ଼ିବାକୁ କହିଥିଲି ନା ?' ଲକ୍ଷ୍ମୀନାରାୟଣ କହିଲେ–'ହଁ, ଖାଲି ହାଡ଼ି ନୁହେଁ, ହାଡ଼ିଆଣୀ ଗୋଡ ତଳେ ବି ପଡ଼ିବି ।'

କହି ଧାଇଁଗଲେ ଗୋପିଆ ହାଡ଼ି ଘରକୁ । ସେଠି ଗୋପିଆ ହାଡ଼ିର ସ୍ତ୍ରୀ ଲକ୍ଷ୍ମୀନାରାୟଣଙ୍କୁ ଦେଖି ଲାଜରେ ଗେଷେଇଘରେ ପଶିଗଲା । ଲକ୍ଷ୍ମୀନାରାୟଣ ଗେଷେଇଘରକୁ ଯାଇଁ ତା' ଗୋଡ଼ ତଳେ ମୁଣ୍ଡିଆ ମାରିଲେ । ବାଟରେ ଫେରିଲା ବେଳକୁ ମଲ୍ଲୀ ଗଉଡୁଣୀ । ତା' ଗୋଡ଼ ତଳେ ପଡ଼ିଲେ । ସେଦିନ ସକାଳୁ ଗତି ଦଶଟା ଯାକେ ଯାହାକୁ ଦେଖିଲେ ତା' ଗୋଡ଼ ତଳେ ପଡ଼ିଲେ । ସମସ୍ତେ ଆଶୀର୍ବାଦ କଲେ । ତା' ଆର ଦିନରୁ ତାଙ୍କର ଚୁଟି, ମାଳି, ପର ଘରେ ନ ଖାଇବା ସବୁ କୁଆଡ଼େ ଗଲା । ସେ ହେଇଗଲେ ଆଚଣ୍ଡାଳବ୍ରାହ୍ମଣ ସମସ୍ତଙ୍କ ଘରର କୁଣିଆ । ମୁସଲମାନ ଅଜିଜୁଲା ହାତରୁ ପାଉଁରୁଟି ଛଡ଼େଇ ଖାଇଲେ, ଚଉଦ୍ୱାର ତମା ପାଣ ସାଙ୍ଗରେ ଏକା ପତରରେ ବସି ଖାଇଲେ । ତାଙ୍କ ଗୁଡ଼ିଆ ଜାତି ତାଙ୍କୁ ଅଟକ ରଖିବାରୁ ବହିରେ ଏଡେଏଡ଼େ ଅକ୍ଷରରେ ଲେଖି ଛାପିଲେ–"ଲକ୍ଷ୍ମୀନାରାୟଣ ସାହୁ ଜାତିରେ ପାଣ ।"

## ତଥାପି ଶାଙ୍କୁବ ଲାଙ୍ଗୁଡ଼ !

ସେ ଯେତେବେଳେ ମାଇନର ପଢୁଥିଲେ, ତାଙ୍କ ବାପାଙ୍କ ସଙ୍ଗରେ ଗୁଡ଼ିଆ-ଦୋକାନରେ ବସୁଥିଲେ । ତାଙ୍କ ଘର ପାଖରେ ବାପା ଛୋଟିଆ

ଗୁଡ଼ିଆ ଦୋକାନଟିଏ କରିଥାନ୍ତି । ଲକ୍ଷ୍ମୀନାରାୟଣ ସେଇଠି ବସି ସଉଦା ବିକନ୍ତି ଓ ମଧ୍ୟେ ମଧ୍ୟେ ନାନା ରକମ ଜଳଖିଆ ତିଆରିରେ ବାପାଙ୍କୁ ସାହାଯ୍ୟ କରନ୍ତି । "ସେହି ସମୟରେ ଜଳଖିଆ ଦୋକାନରେ ବସି ମୁଁ ଅନେକ ଜଳଖିଆ ଲୁଚି ଲୁଚି ଖାଇ ଦେଇଛି । ଥରେ ମୁଁ ହାଲୁଆ, ସନ୍ଦେଶ ଓ ଖାସ୍ତା ପୁରି ପାଟିରେ ପୂରେଇ ମିଛରେ ପରିସ୍ରା କରିବାକୁ ଯାଇଛି, ଏହି ସମୟରେ ଜଣେ ଗରାଖ ଦୋକାନକୁ ଆସିଲା । ମୋର ମା ଭିତରୁ ଦୌଡ଼ି ଆସି କହିଲା–'କାହିଁ, ସେ କୁଆଡ଼େ ଗଲା ?' ମୁଁ ସେତେବେଳେ ପାଟିରେ ସନ୍ଦେଶ ଭର୍ତ୍ତି କରିଛି, କଥା କହି ପାରୁନାହିଁ । ତା'ପରେ ଯେତେବେଳେ ମୁଁ ଆସି ଠିଆ ହେଲି, ମା' ପଚାରିଲା–ତୁ କୁଆଡେ ଯାଇଥିଲୁ ? ମୁଁ କହିଲି–ମୁଁ ପରିସ୍ରା କରୁଥିଲି । କାରଣ ସେତେବେଳେ ମାଷ୍ଟରମାନଙ୍କଠାରୁ ଓ ଅନ୍ୟାନ୍ୟ ମାନଙ୍କଠାରୁ ମୁଁ ଜାଣିଥିଲି ଯେ ପରିସ୍ରା କଲାବେଳେ କଥା କହିବ ନାହିଁ । ସେହି ସୁବିଧାଟି ନେଲି ।"

"ଦୋକାନରେ ବସୁଥିବାବେଳେ ବାବା ଗତିରେ ତାଗିଦାକୁ ଯାଆନ୍ତି, ମୋତେ ଦୋକାନରେ ବସାଇ ଦିଅନ୍ତି । ମୁଁ ସେହି ଅବସରରେ ଦୋକାନରେ ବସି ଯାହା ଖାଇବାର ତ ଖାଏ, ତାହା ଛଡ଼ା ମୋ ସାଙ୍ଗ ପ୍ରିୟ ମୁଟୁରୁ ଦୋକାନକୁ ଆସିଲେ ଦୋକାନରୁ କିଛି ପଇସା ନେଇ ତା' ହାତକୁ ଦେଇ ଦିଏ । ସେହି ପଇସାରେ ଆମେ ଗୁଡ଼ି-ସୂତା କରୁ ଏବଂ ଉଡ଼ାଉ । ଆଉ ତାହା ଛଡ଼ା ବଜାରରେ, ହୋଟେଲରେ ମାଉଁସ ଖାଉ । ଗୁଡି-ଉଡାରେ ଆମର ଦୁଇ ଦଳ ହୋଇଥାଏ–ବାରବାଟୀ ଓ ମାଣିଖମ୍ବ । ଆମେ ଶାଙ୍କୁଚ ଲଙ୍ଗୁଡ ଧରି ଗତିରେ ବୁଲୁଥାଉ । ବିପକ୍ଷ ଦଳ ସହିତ ମାରପିଟ୍ ବେଳେ ତାହା ସମର୍ଥ ସମୟରେ କାମରେ ଲାଗେ ।'

—ମୋ ବାରବୁଲା ଜୀବନ–ପୃ-୪୬

ବାପ୍‌ରେ ବାପ୍, କି ଦୁଷ୍ଟ !
ଗୋପିଆ ହାଡ଼ିର ଗୋଡ ତଳେ !
ପୁଣି ଶାଙ୍କୁଚ ଲଙ୍ଗୁଡ଼ !!

# ଆସ କରୁଣାକର, ମୋ କାନ ମୋଡ଼ !

ଇଏ ଏକ ବିଚିତ୍ର କଥା । ଶିକ୍ଷକ ସିନା ଛାତ୍ରର କାନ ମୋଡ଼େ, ଏଠି ଛାତ୍ର ଶିକ୍ଷକର କାନ ମୋଡ଼ିଲା ! ଏବର କଟକ କ୍ରାଏଷ୍ଟ କଲିଜିଏଟ୍ ସେବର ମିଶନ୍ ସ୍କୁଲ । ଲକ୍ଷ୍ମୀନାରାୟଣ ସାହୁ ଶିକ୍ଷକ ଥାଆନ୍ତି ! ଉତ୍ତର କାଳରେ ଅତି ପ୍ରସିଦ୍ଧ ସଂସ୍କୃତ ପଣ୍ଡିତ, ରେଭେନ୍ସା କଲେଜର ପ୍ରଫେସର ଡକ୍ଟର କରୁଣାକର କର, ଡ଼ି ଲିଟ୍. ସେତେବେଳେ ମିଶନ ସ୍କୁଲରେ ନବମ ଶ୍ରେଣୀର ଛାତ୍ର । ଇଂରେଜିରେ ସିଏ ଦୁର୍ବଳ । ତେଣୁ ଲକ୍ଷ୍ମୀନାରାୟଣ ଦିନେ ଦିନେ ତା' କାନ ମୋଡ଼ନ୍ତି, ବେଞ୍ଚ ଉପରେ ଠିଆ କରନ୍ତି । ମାମୁଲି କଥା । କିନ୍ତୁ ଦିନେ ଗୋଟାଏ ଅଖାଡୁଆ କଥା ହେଲା । ଦିନେ ସଂସ୍କୃତ ପଣ୍ଡିତ ଆସି ନ ଥାନ୍ତି । ହେଡ଼୍‌ମାଷ୍ଟ୍ରେ ଲକ୍ଷ୍ମୀନାରାୟଣଙ୍କୁ କହିଲେ ସେହି ନବମ ଶ୍ରେଣୀକି ଯାଇ କ୍ଲାସ୍ ନେବାକୁ । କ୍ଲାସ୍‌ରେ ଇଂରେଜି ବା ଅନ୍ୟକିଛି ପଢ଼ାଇଥିଲେ ହେଇଥାନ୍ତା । କିନ୍ତୁ ସେତେବେଳର ଶିକ୍ଷକ ତ ସବ୍‌ଜାନ୍ତା । ଲକ୍ଷ୍ମୀନାରାୟଣଙ୍କର ବି ବହୁ ବିଷୟରେ ପ୍ରବେଶ । ତେଣୁ ସେ ଯାଇଁ ସଂସ୍କୃତ ପଢ଼ାଇ ବସିଲେ । ପଢ଼ାଉ ପଢ଼ାଉ ଗୋଟିଏ ଶବ୍ଦର ପ୍ରକୃତି ପ୍ରତ୍ୟୟ ପଚାରିଲେ । ଅନ୍ୟ କେହି ସିନା କହି ପାରିଲେ ନାହିଁ, କରୁଣାକର କ'ଣ ଏକ ଲୁଙ୍ ପ୍ରତ୍ୟୟ କଲା । ଲକ୍ଷ୍ମୀନାରାୟଣ ଆରୁକାରୁ ହେଇଗଲେ, ଯେପରି କି ନିଃଶ୍ୱାସ ବନ୍ଦ ହେଇଯିବ—ପାଣିରେ ବୁଡ଼ି ମିବା ଭଳି ଅନୁଭବ କଲେ । ସେଦିନ ସ୍କୁଲ ଛୁଟି ପରେ କରୁଣାକରଙ୍କୁ ପାଖକୁ ଡାକି କହିଲେ—ତୁମେ କେତେଦୂର ସଂସ୍କୃତ ପଢ଼ିଛ ? ସେ କହିଲା—କାବ୍ୟ ପ୍ରଥମ । ଲକ୍ଷ୍ମୀନାରାୟଣ ସାଙ୍ଗେ ସାଙ୍ଗେ କହିଲେ—ମତେ ଯା' ଆସିଲା ନାହିଁ, ତମେ କହିଦେଲ, ତେଣୁ ଆସ କରୁଣାକର, ମୋ କାନ ମୋଡ଼ । ସେ ମୋଡ଼ିଲା ନାହିଁ । ଲକ୍ଷ୍ମୀନାରାୟଣ ଜବରଦସ୍ତ ତା' ହାତକୁ ନିଜ କାନ ପାଖକୁ ନେଇଗଲେ ଓ ମୋଡ଼ାଇଲେ !

ସେହିଦିନୁ ଲକ୍ଷ୍ମୀନାରାୟଣ ଓ କରୁଣାକର ସାଙ୍ଗ ହେଇ ଶେଖ୍ ବଜାରରେ ଗୋଟିଏ ମେସ୍‌ରେ ରହିଲେ । ଲକ୍ଷ୍ମୀନାରାୟଣ କରୁଣାକରଙ୍କୁ ଇଂରେଜି ପଢ଼େଇଲେ, କରୁଣାକର ଲକ୍ଷ୍ମୀନାରାୟଣଙ୍କୁ ସଂସ୍କୃତ ପଢ଼େଇଲେ !

ମହୋଦଧି ଭଳି ଅଥଳ ସିନ୍ଧୁ ନହେଲେ କିଏ ଏମିତି କରିବ ?

## କାଳନ୍ଦୀ ପାଣିଗ୍ରାହୀଙ୍କ ଆଗରେ ଆଣ୍ଠୁମାଡ଼ି !

ସାହିତ୍ୟିକ ପଦ୍ମଭୂଷଣ କାଳନ୍ଦୀଚରଣ ଲକ୍ଷ୍ମୀନାରାୟଣଙ୍କ ଠାରୁ ବୟସରେ ଯଥେଷ୍ଟ ସାନ । ଲକ୍ଷ୍ମୀନାରାୟଣଙ୍କର ପରମ ଭକ୍ତ, ଅତି ପ୍ରିୟ । କିନ୍ତୁ କୌଣସି ଏକ ଆଲୋଚନା ପ୍ରସଙ୍ଗରେ କ୍ଷଣକୋପୀ ଲକ୍ଷ୍ମୀନାରାୟଣ ତାଙ୍କ ଉପରେ ଚଟ୍‌କିନି ରାଗିଗଲେ। ତାଙ୍କୁ ବଡ଼ କର୍କଶ କଥା କହିଲେ । ଆଉ ଠିକ୍ ତା' ପରଦିନ ରାଜରାସ୍ତାରେ ଦେଖା । ଚଟ୍‌କିନା ରିକ୍‌ସାରୁ ଓହ୍ଲାଇ ପଡ଼ି ଲକ୍ଷ୍ମୀନାରାୟଣ କାଳିନ୍ଦୀଙ୍କ ଆଗରେ ବିଚ୍ ରାସ୍ତାରେ ଆଣ୍ଠୁମାଡ଼ି, କରଯୋଡ଼ି କ୍ଷମାଭିକ୍ଷା । ଆଖିରେ ଦରଦର ଅଶ୍ରୁ । କଣ୍ଠରେ ଆକୁଳ ପ୍ରାର୍ଥନା—କ୍ଷମାକର, କ୍ଷମାକର, କ୍ଷମାକର । ପାଖରେ ଅସଂଖ୍ୟ ଲୋକ ଜମା । କି ନାଟକୀୟ ! କି ହୃଦୟସ୍ପର୍ଶୀ !

## କଦଳୀ ପତ୍ରରେ ଟପ୍ ଟପ୍ 'ଆଖିଲୁହ !

ହୃଦାନନ୍ଦ ବ୍ରାହ୍ମଣ । ଲକ୍ଷ୍ମୀନାରାୟଣ ଗୁଡ଼ିଆ । ହୃଦାନନ୍ଦ ମିଶନ ସ୍କୁଲରେ ଲକ୍ଷ୍ମୀନାରାୟଣଙ୍କର ପ୍ରିୟ ଛାତ୍ର । ଥରେ ହୃଦାନନ୍ଦ ନିମନ୍ତ୍ରଣ କଲା ଲକ୍ଷ୍ମୀନାରାୟଣଙ୍କୁ ତାଙ୍କ ଘରକୁ । ତାଙ୍କ ଗାଁ ହରିଦାସପୁର । ବ୍ରାହ୍ମଣ ଶାସନ । ବାପା ଅତି ରକ୍ଷଣଶୀଳ । ୧୯୨୩-୨୪ର କଥା । ସେତେବେଳେ ଏ ବାରବୁଲା ଲକ୍ଷ୍ମୀନାରାୟଣଙ୍କୁ କେଉଁ ବ୍ରାହ୍ମଣ ଘରେ ପୂରେଇବ ? ବାପାଙ୍କର କଡ଼ା ଆଦେଶ—'ଲକ୍ଷ୍ମୀନାରାୟଣ ସାହୁର ଜାତି ପତି କିଛି ନାହିଁ । ପାଣ, ପଠାଣ, ହାଡ଼ି, ବାଉରି ସମସ୍ତଙ୍କୁ ଛୁଉଁଛି । ସେ ଖିରସ୍ତାନ୍ । ସେ ଆମ ବାସନରେ ଖାଇ ପାରିବ ନାହିଁ ।' ବାପାଙ୍କ ଆଦେଶ ବିରୁଦ୍ଧରେ ହୃଦାନନ୍ଦ ଯାଇପାରିବ ?

ହୃଦାନନ୍ଦ ବାଧ୍ୟ ହୋଇ ତା' ପ୍ରିୟତମ ଗୁରୁଙ୍କୁ ବାହାରେ ମାଟି ପିଣ୍ଡାରେ କଦଳୀ ପତ୍ରରେ ଭାତ ବାଢ଼ି ଦେଇଗଲା । ଲକ୍ଷ୍ମୀନାରାୟଣଙ୍କର ଟିକିଏ ବି ବିକାର ନାହିଁ । ମହା ଆନନ୍ଦରେ ତଳକୁ ମୁହଁ ପୋତି ଭାତ ସଜାଡ଼ିବାରେ ଲାଗିଛନ୍ତି । ହୃଦାନନ୍ଦ ଡାଲି ଆଣିଲା । ଡାଲି ଦେଲାବେଳକୁ ଲକ୍ଷ୍ମୀନାରାୟଣ ଅନୁଭବ କଲେ ଭାତରେ ଥପ୍‌ଥପ୍ ହୋଇ ପାଣି ପଡୁଛି । ସେ ଭାବିଲେ ବୋଧେ ହୃଦାନନ୍ଦ ପତରରେ ପାଣି ଛିଞ୍ଚୁଛି । କହିଲେ—'ମ, ଭାତ ଦେଇସାରି ପୁଣି ପାଣି !' ମୁହଁ ଟେକି ଉପରକୁ ଚାହିଁଲା ବେଳକୁ ହୃଦାନନ୍ଦ ଭୋ ଭୋ ହୋଇ

କାନ୍ଦୁଛି । ଥପ୍‌ଥପ୍ ହୋଇ ଅଜାଡ଼ି ହୋଇ ପଡୁଛି ଏକ କିଶୋରର ଅଜସ୍ର ଅଶ୍ରୁଧାର । ଲକ୍ଷ୍ମୀନାରାୟଣ ଉଠି ଠିଆ ହେଲେ । ସ୍ୱଦାନନ୍ଦକୁ କୁଣ୍ଢେଇ ଧରି ନିଜେ ଭୋ ଭୋ କାନ୍ଦିଲେ । ଝରଣାର କୁଳୁକୁଳୁ ଧ୍ୱନି ନଈର ଫେନିଳ ଲହରୀରେ ଯେମିତି ମିଶିଗଲା !

## ଅଇଁଠା ପତ୍ର ଆଉ କାହିଁ ? କାହିଁ ?

କଟକ ମିଶନ ସ୍କୁଲରେ ମାଷ୍ଟରି କାଳ କଥା । ଥରେ ମିଶନ ସ୍କୁଲର ଦଳେ ପିଲାଙ୍କୁ ନେଇ ବଣଭୋଜି କରିବାକୁ ଯାଇଥିଲେ ଚିଲିକା କୂଳକୁ । ଚିଲିକା କୂଳରେ ଏକ ବ୍ରାହ୍ମଣ ଶାସନ । ସେଇଠି ଗନ୍ଧିବାଡ଼ି ଖାଇ ଅଇଁଠା ପତ୍ର ଗୋଟିଏ ସ୍ଥାନରେ ଫିଙ୍ଗିଦେଲେ । ବ୍ରାହ୍ମଣ, ପୁଣି ପୁରୀ ବ୍ରାହ୍ମଣ ଶାସନ, ଆଉ ଏଣେ ଏମାନେ ମିଶନ ସ୍କୁଲିଆ ପିଲା—ଖ୍ରିଷ୍ଟାନ୍ । ଗାଁ ଭିତରେ ହୁଲ୍‌ସ୍ଥୁଲ୍ ପଡ଼ିଗଲା । ଲୋକେ ଗାଳିଫଜିତ କରି 'ଶଳାଙ୍କୁ ଦେଖାଇଦବା' ବୋଲି କହି ଘରଭିତରୁ ଠେଙ୍ଗାବାଡ଼ି ଧରି ବାହାରି ଆସିଲେ । କିନ୍ତୁ ସେ କାଣ୍ଡ ଠାଁ ଏ କାଣ୍ଡ ବଳିଲା । ଡେଙ୍ଗା ପଞ୍ଝହତା ଲକ୍ଷ୍ମୀନାରାୟଣ ଚଟ୍‌କିନି ଉଠିଯାଇଁ ସ୍କୁଲପିଲାଙ୍କ ପତ୍ର, ଶିକ୍ଷକଙ୍କ ପତ୍ର, ସେ ଗାଁର ଯେତେ ଯାହା ବାଡ଼ିରେ ଯୋଉ କାଳର ଅଇଁଠା ପତ୍ର ପଡ଼ିଥିଲା, ସବୁ ଗୋଟେଇ ପୋଟେଇ, ଟୋକେଇ ଟୋକେଇ ମୁଣ୍ଡରେ ଧରି ଗାଁର ବହୁ ଦୂରରେ ଫିଙ୍ଗିଦେଇ ଆସିଲେ । ଆସି କହିଲେ—'ଆଉ କାହିଁ ? ଆଉ କାହିଁ ? ଆଉ କେଉଁଠି ଅଇଁଠା ପତ୍ର ଅଛି ଦିଅ ।' ସମସ୍ତେ ତାଜୁବ୍ । ଗାଁ ଲୋକଙ୍କ ହାତରୁ ଠେଙ୍ଗା ଖସିପଡ଼ିଲା !

ଘୃଣା କାହିଁ ? ଅହଂକାର କାହିଁ ?

## ଦିନେ ଗୋଛାଏ ନଡ଼ା ମୁଣ୍ଡରେ !

ଦେଉଳ ସାହିରେ ନିଜ ଘରେ ନଡ଼ା ନଥିଲା । ସ୍ତ୍ରୀ ବେଜାର ହେଲେ— ସବୁ ଦିନେ ତ ସେଇ ନିଆଁ ପାଉଁଶ ପାଠ, ଘରଚିନ୍ତା କରିବାକୁ ବେଳ କାହିଁ ? ଘରେ ଛଣ ବିଡ଼ାଏ ନାହିଁ ଯେ ଗାଈ ଖାଡା ଖାଡ଼ା ଖୁଣ୍ଟରେ ବନ୍ଧା ! ଲକ୍ଷ୍ମୀନାରାୟଣଙ୍କ କାନରେ ପଡ଼ିଗଲା । ସାଙ୍ଗେ ସାଙ୍ଗେ ଉଠିଲେ ସେଇ ନିର୍ଘୁମ୍ ଖରରେ, ସାଇକେଲରେ ଖୋଦ୍ଧାର ଯାଇଁ, ସାଇକେଲ ସେଇଠି ଫିଙ୍ଗିଦେଲେ । ପାଇକଛା ଭିଡ଼ି, ମୁଣ୍ଡରେ ଠେକା ବାନ୍ଧି ଗୋଛାଏ ନଡ଼ା ମୁଣ୍ଡେଇ ଧଇଁସଇଁ

ହେଇ ଯେଉ ଖରଏ ଖରଏ ଆସିଲେ ଦେଉଳ ସାହି ! ବାଟରେ ବହୁ ବନ୍ଧୁ, ଛାତ୍ର ଦେଖା । ସମସ୍ତଙ୍କ ମୁହଁରେ–ସାର୍ ଆପଣ ? ସାର୍ ଆପଣ ? 'ଆପଣ' କିନ୍ତୁ ନିର୍ବିକାର । ଟିକିଏ ବି ଗର୍ବ ନାହିଁ, ଦମ୍ଭ ନାହିଁ, ଦୁଃଖ ନାହିଁ । ପରେ– ସେଇ କଥା ପଚାରିଲେ କହନ୍ତି– କାହିଁକି ? କ'ଣ ହେଲା ? ସୂର୍ଯ୍ୟ କିରଣ ଦେଉଛି ବୋଲି କ'ଣ ଗର୍ବ କରୁଛି ? ଏଇ ଟିକିଏ କଲି ବୋଲି କାହିଁକି ଗର୍ବ? କାହିଁକି ଆତ୍ମମ୍ଭରିତା ?

## ଦିନେ ଗଣ୍ଡିଗାଏ ଧୋବାଲୁଗା ମୁଣ୍ଡରେ !

ଇଏ ବି ଆହୁରି ବିଚିତ୍ର । ଦିନେ ଚଉଦ୍ୱାରରୁ ଡଙ୍ଗାରେ ଆସିଲେ ଯୋବରା । ଯୋବରା ଆନିକଟ ପାଖରୁ ନଈ ବନ୍ଧେ ବନ୍ଧେ ଗ୍ଲିଗ୍ଲି ଆସୁଛନ୍ତି । ସଞ୍ଜ ହୋଇଗଲାଣି । ବେଶ୍ ଅନ୍ଧାର ବି । ମୁହଁକୁ ମୁହଁ ଦିଶୁ ନାହିଁ । ନଈ ବନ୍ଧରେ ମିଞ୍ଜି ମିଞ୍ଜି ଆଲୁଅ । ମାଡାମଠ ପାଖରେ ନଈବନ୍ଧରୁ ସହରକୁ ପଶିବା ଆଗରୁ କାନରେ ଦାଉଁ ଦାଉଁ ବାଜିଲା–'ପଞ୍ଚୁଆରେ ହେ ! ହେ ! ! ପଞ୍ଚୁଆରେ ହେ ! ହେ ! ! ଲକ୍ଷ୍ମୀନାରାୟଣ ଅଟକିଲେ । ପାଟି ବାରିଲେ । ଇଏ ସେଇ ନିଧିଆ ବୁଢ଼ାର ପାଟି । ନିଧିଆ ବୁଢ଼ା ଧୋବାଟିଏ । ଦିନ ଦି'ଟାରୁ ଗଣ୍ଡିରାଏ ସିଝାଲୁଗା ଆଣି କାଚେ–ନଈ କୂଳରେ–ପଥର ଉପରେ । କାଚୁକାଚୁ ସଞ୍ଜ । ବୁଢ଼ା ଭୋକେଇ ଯାଏ, ଆଉ ନେଇ ପାରେନାହିଁ । ପୁଅ ପଞ୍ଚୁଆ ଆସି ଓଦାଲୁଗା ମୁଣ୍ଡେଇ ଘରକୁ ଫେରେ । ଦିନେ ଦିନେ ପଞ୍ଚୁଆ ମଦପାଣି କରି ସେଇ ନିଶାରେ ଭୋଳ ହୋଇ କୁଆଡ଼େ ରହିଯାଏ । ବୁଢ଼ା ଅନିସା କରି କରି ଡାକ ଛାଡ଼େ–ପଞ୍ଚୁଆରେ ହେ ! ହେ ! ।

ଲକ୍ଷ୍ମୀନାରାୟଣ ଏ କଥା କାଠଗୋଲାରେ ଦିନେ ବସିବସି ଶୁଣିଥିଲେ । ଆଜି ହେଜିଲେ କଥାଟା ସତ । ଅନ୍ଧାର ତ ଖୁବ୍ ହେଲାଣି । ବୁଢ଼ା ବି ଭରି ହାଲିଆ । ଗ୍ଲ' ପାଣି ଟୋପାଏ ପାଇଁ ତଣ୍ଟି ଶୁଖି ଅଠା ଅଠା । ପୁଣି ତା' ଉପରେ ତା' ଉପରେ ଡାକ । ଏତେବେଳେ କ'ଣ ସେ ଚିହ୍ନି ପାରିବେ ? ଲକ୍ଷ୍ମୀନାରାୟଣ ମୁଣ୍ଡରେ ଚଦର ଗୁଡ଼େଇ, ଠେକା ବାନ୍ଧି ସିଧା ପାଇଁ ପହଞ୍ଚିଲେ ବୁଢ଼ା ପାଖରେ । ଆଉ କଅଁଲୁଗା ଗଣ୍ଡିରାକ ମୁଣ୍ଡରେ ଥୋଇ ଟୁଙ୍ଗ୍ ଟୁଙ୍ଗ୍ ଚାଲିଲେ ଆଗେ ଆଗେ । ବୁଢ଼ା ପଛେ ପଛେ । ଅନେକ ବାଟ ଗଲାପରେ ଲକ୍ଷ୍ମୀନାରାୟଣ ପଛକୁ ଚାହିଁଲେ–ବୁଢ଼ା ଆସୁଛି ତ ? ଲାଇଟ୍ ଆଲୁଅରେ ବୁଢ଼ା

ଆଖି ଲକ୍ଷ୍ମୀନାରାୟଣଙ୍କ ଆଖି ଏକାଠି ହୋଇଗଲା । ବୁଢା ଚାଟଙ୍ଗା ହୋଇ ଡାକ ଛାଡ଼ିଲା—ବା-ବୁ !! ଲକ୍ଷ୍ମୀନାରାୟଣ ଟିକିଏ ହସିଦେଇ ବୁଢ଼ା ହାତ ଧରି କହିଲେ—ଆସ, ଆସ ମଉସା । ମୁଁ ଘରେ ଛାଡ଼ି ଆସିବି ।

ଗୁଡ଼ିଆ ଚୋକା ପାଣ ହେଇଥିଲା, ଏଠି ପୁଣି ଧୋବା ହେଲା !!

## ରାତି ଏଗାରଟାରେ ସ୍ତ୍ରୀଙ୍କୁ ଛାଡ଼, ଛୁ !

ସବୁଠାରୁ ମଜା କଥା—ରାତି ଏଗାରଟାରେ ଜୟପୁର ଟାଉନରେ ନବ-ବିବାହିତା ସ୍ତ୍ରୀଙ୍କୁ ଛାଡ଼ି, ଛୁ !!!

ରାତି ଏଗାର । ଅନ୍ଧାର କିଟିକିଟି ରାତି । ଅଜଣା ସ୍ଥାନ, ଅଚିହ୍ନା ଲୋକ । ତହିଁକି ପୁଣି ଷୋଳଅଣାରୁ ଚଉଦଅଣା ଲୋକ ତେଲୁଗୁ—ଅକଟି, ଗୁଣ୍ଡୁ, ମୁଣ୍ଡୁ । ଆଉ ଏପଟେ ବୋହୂ ତରୁଣୀ, ନବ ବିବାହିତା । ଅଙ୍ଗେ ଅଙ୍ଗେ ରଙ୍ଗବୋଳା ଉଛୁଳା ଯୌବନ !!

ଲକ୍ଷ୍ମୀନାରାୟଣ ଜୟପୁର କାହିଁକି ଯାଇଥିଲେ ? ଜୟପୁର ଟାଉନ୍ ହଲ୍‌ରେ ଦେଶମିଶ୍ରଣ ସମ୍ପର୍କରେ ଗୋଟାଏ ବଡ଼ ସଭା ହୋଇଥାଏ । ଲକ୍ଷ୍ମୀ-ନାରାୟଣ ସେଥିରେ ମୁଖ୍ୟବକ୍ତା । ସେତେବେଳେ ସେ ଉଦ୍ଦାମ ତରୁଣ । ତେଜ, ଓଜ, ବୀର୍ଯ୍ୟ, ଗାମ୍ଭୀର୍ଯ୍ୟରେ ଚତୁର୍ଦ୍ଦିଗ ପ୍ରକମ୍ପିତ କରି ଲକ୍ଷ୍ମୀନାରାୟଣ ବକ୍ତୃତା ଦେଲେ— "ଖାଲି ଜୟପୁର ନୁହେଁ, ବିଶାଖାପାଟଣା ନୁହେଁ, ବିଜୟ-ଓାଡ଼ା, ରାଜମହେନ୍ଦ୍ରୀ ଡେଇଁ ଗୋଦାବରୀ, କୃଷ୍ଣା, କାବେରୀ, କାଞ୍ଚିଭରମ୍ ପର୍ଯ୍ୟନ୍ତ ଦିନେ ଓଡ଼ିଆ ପାଇକ ରେ' ରେ' କାର ଧ୍ୱନିକରି ଝପଟି ଯାଇଥିଲେ । ସମଗ୍ର ଦକ୍ଷିଣ ଭାରତରେ ଆଧିପତ୍ୟ ବିସ୍ତାର କରି, ଗର୍ବ ଗୌରବର ଜୟଡଙ୍କା ବଜେଇ ରାଜମହେନ୍ଦ୍ରୀରେ ଗଭର୍ଣ୍ଣର ଥିଲେ ଓଡ଼ିଆ ପୁଅ ରାୟରାମାନନ୍ଦ । ପୁଣି ଏଇ ଓଡ଼ିଆ ପୁଅ ବିଜୟ ଦିନେ ସ୍ୱର୍ଣ୍ଣଦ୍ୱୀପ ସିଂହଳର ସିଂହାସନ ଅଧିକାର କରିଥିଲେ । ଓଡ଼ିଆ ସାଧବ ଦିନେ ଜୟ ଜଗନ୍ନାଥ କହି, ବଙ୍ଗ ସାଗରର କରାଳ ଲହରୀ ଚିରି ଛୁଟି ଯାଇଥିଲେ ଜାଭା ସୁମାତ୍ରା, ମାଲୟ, କାମ୍ବୋଡ଼ିଆ......

ଭାଷଣ ଚାଲିଛି । ସଭାସ୍ଥଳ ଘୁ' ଘୁ' କମ୍ପୁଛି । ତାଳି ଉପରେ ତାଳି, ଗର୍ଜନ ଉପରେ ଗର୍ଜନ । ଜୟ ଜଗନ୍ନାଥ, ଜୟ ଓଡ଼ିଆ ତାନରେ ଆକାଶ ପବନ ଫାଟି ପଡୁଛି ।

ସଭ ସବୁ ସବୁ ଗତି ଦଶ କି ଏଗାର । ଉନ୍ମାଦ, ଭାବପ୍ରବଣ ଲକ୍ଷ୍ମୀନାରାୟଣ ସିଧାସଳଖ ସଭରୁ ଉଠି ଟୁଙ୍ଗ୍ ଟୁଙ୍ଗ୍ ଆସି ବସାରେ ହାଜର ।

ଦୁର୍ଗା ମୂର୍ତ୍ତି ଭଳି ଘରୁ ବାହାରି ପଡ଼ିଲେ ମା' । କହିଲେ—ବୋହୂ କାହିଁ ?

ଏତେବେଳେ ଲକ୍ଷ୍ମୀନାରାୟଣଙ୍କର ଚେତା ପଶିଲା । କହିଲେ– ହଁ ତ, ବୋହୂ କାହିଁ ? ବୋହୂ ତ' ସାଙ୍ଗରେ ଯାଇଥିଲା, ଆସିଲା ନାହିଁ କେମନେ ? ମୁଁ କିସ ତାକୁ କାନ୍ଧେଇ କରି ନେବି ? କାନ୍ଧେଇ କରି ଆଣିବି ?

ଲକ୍ଷ୍ମୀନାରାୟଣ ଚଣ୍ଡ-ଦୁର୍ଦ୍ଦାନ୍ତ । ହେଲେ ବାଘୁଣୀ ମା' ପାଖରେ ସେ ମୂଷା । ମା' କହିଲେ– ନଖି, ଏ ଖଡ଼ୁକୁ ଦେଖୁଛୁ ? ଗୋଟାଏ ଖଡ଼ୁମୁଷାରେ ତ'ର ତାଳୁ କଣା କରିଦେବି । ଗତରକଢ଼ି ଦଶାଦିଆ ଛୁଆ, ଯାଉଛୁ ନା ମୋ ବୋହୂକୁ ଆଣିବୁ ।

ବୀର ଓଡ଼ିଆ ଗର୍ଗିମାର୍ଗି, ସ୍ତ୍ରୀଙ୍କ ଚଉଦ ପୁରୁଷ ଉଝାଳି ବୀର ଦର୍ପରେ ଗ୍ଲଲିଲେ ସ୍ତ୍ରୀଙ୍କୁ ଖୋଜିବାକୁ । ଗତି ଏଗାର !

ଗୋଟିଏ ପାନ ଦୋକାନରେ ଏକ ମିଞ୍ଜିମିଞ୍ଜି ଆଲୁଅ ପାଖରେ ଗୋଟିଏ କଡ଼କୁ ଆଉଜି ଭୟରେ ଜଡ଼ସଡ଼ ହେଇ ଠିଆ ହେଇଥିଲେ ବୀର ଓଡ଼ିଆଙ୍କ ସହଧର୍ମିଣୀ—ବୀଣା ।

ପାଗଳ—ତୁଛା ପାଗଳ ନ ହେଲେ ଏମିତି କିଏ କରିବ ?

## ପାଗଳ ହିଁ କିଛି କରନ୍ତି :

କିନ୍ତୁ ଋଷି ଅରବିନ୍ଦ କହନ୍ତି—ସାଧାରଣ ଲୋକ ସବୁବେଳେ ସାଧାରଣ । ପାଗଳ ନ ହେଲେ, ବିଭୋର ନ ହେଲେ, ତନ୍ମୟ ନ ହେଲେ କେହି କିଛି ଅସାଧାରଣ କାମ କରିପାରେ କି ? ଲକ୍ଷ୍ମୀନାରାୟଣ ଏମିତି ଗୋଟିଏ ପାଗଳ ଥିଲେ, ଯିଏ ନିଜକୁ ଭୁଲି, ନିଜ ଘରଦ୍ୱାର ସ୍ତ୍ରୀ ପିଲାଙ୍କୁ ଭୁଲି ସବୁବେଳେ ଲାଗିଥିଲେ କାମରେ, କାମରେ, ଆଉ କାମରେ । ଦେଶ ପାଇଁ, ଜାତି ପାଇଁ, ସାହିତ୍ୟ ପାଇଁ, ସଂସ୍କୃତି ପାଇଁ, ପର ପାଇଁ, ଶତ୍ରୁ ପାଇଁ, ବନ୍ୟା-ଦୁର୍ଗତଙ୍କ ପାଇଁ

ସବୁବେଳେ ଜୀବନକୁ ତିଳତିଳ କରି ଜାଳିଦେବାହିଁ ଥିଲା ତାଙ୍କର ଧର୍ମ। ଯାହା ଇଂରେଜୀ କବି 'ଶେଲି' କହିଥିଲେ—

' I am a friend to the unfriended poor. "
( ଯା'ର କେହି ବନ୍ଧୁ ନାହିଁ, ମୁଁ ତାଆରି ବନ୍ଧୁ । )

ବା

ଯାହା କବି ଅଲିଭର ଗୋଲ୍ଡସ୍ମିଥ୍ କହିଥିଲେ 'The village Preacher ' ସମ୍ପର୍କରେ—

" More skilled to raise the wretched than to rise. " ( The Deserted Village )

( ନିଜେ ଉଠିବା ଅପେକ୍ଷା ହତଭାଗ୍ୟ ଲୋକଙ୍କୁ ଉଠେଇବାରେ ସେ ବେଶୀ ଧୂରନ୍ଧର । )

ତାହା ଲକ୍ଷ୍ମୀନାରାୟଣ ସାହୁଙ୍କ ସମ୍ପର୍କରେ ବୋଧେ ଶହେରୁ ଶହେ ପ୍ରଯୁଜ୍ୟ ।

ଡକ୍ଟର ଆଲବର୍ଟ ସ୍ବାଏଚରଙ୍କ କଥା—

"Unto whom much is given much is expected."

( ଯାହାଙ୍କୁ ବେଶୀ ଦିଆଯାଇଛି, ତାହାଙ୍କଠାରୁ ବେଶୀ ଆଶା କରାଯାଉଛି । )

ଏ ଦର୍ଶନ ଲକ୍ଷ୍ମୀନାରାୟଣଙ୍କ ରକ୍ତେ ରକ୍ତେ ମିଶି ଯାଇଥିଲା । ତେଣୁ ସେ ଜାଣିଥିଲେ ଖାଲି ଦେବାକୁ—ଦେବାକୁ—ଦେବାକୁ ।

ତାଙ୍କ ମୃତ୍ୟୁପରେ କବି ବାଞ୍ଛାନିଧି ଦାସ ଯାହା କବିତାରେ ଲେଖିଥିଲେ—

" ଧର୍ମ ବୋଲି ଯଦି     ଜାଣିଁ ଥିଲ କିଛି
କର୍ମ କରିଯିବା ପର ପାଇଁ,
ଖ୍ୟାତି ଅପଖ୍ୟାତି     ହାନି ଲାଭ କେତେ
ତୁମକୁ ସେ କଥା ଜଣା ନାହିଁ ।

ସେବା, ସେବା, ସେବା                    ନେବା, ଦେବା ନୁହେଁ
ତନୁର ସଳିତା ଜାଳି ଜାଳି ।

( ମୋ ବାରବୁଲା ଜୀବନ—ଗୋଟିଏ ଅର୍ଘ୍ୟ )

ତାହା ଲକ୍ଷ୍ମୀନାରାୟଣଙ୍କ ପାଇଁ ଏକ ନିରେଜ, ନିଗଟ ସତ କଥା ।

ତେଣୁ ତାଙ୍କ ପ୍ରୟାଣରେ ସବୁଜ  କବି ଶ୍ରୀ ବୈକୁଣ୍ଠ ନାଥ ପଟ୍ଟନାୟକ ଲେଖିଲେ—

"ମଲ୍ଲିକା ମାଳତୀ ଭଳି ସ୍ନିଗ୍ଧ ତୁମ ହସ
ପ୍ରାଣେ ପ୍ରାଣେ ସେହି ଭଳି ଢାଳିଛ ସୁବାସ ।
ହେ ଅକ୍ଲାନ୍ତ କର୍ମଯୋଗି !  ପୂଜିତ ସର୍ବଥା
ଭୁଲେ କାହା ମନେ ଅବା ଦେଇଥବ ବ୍ୟଥା ।
ପୋଛିଛ ବ୍ୟଥିତ ଅଶ୍ରୁ, ପ୍ରୀତି  ଅନୁପମ
ଯାତ୍ରା ଶେଷେ ଲଭ ଶାନ୍ତି ବନ୍ଧୁ ନମୋନମ ।"

( ଚିର ଯୌବନ ଚିର ବସନ୍ତ ପୃ ୮୦ )

□□□

॥ ଗୀତ ॥

## ଜନସେବୀ, ସେ ଜ୍ଞାନସେବୀ

ପରମ ମାନବବାଦୀ, ଲୋକପ୍ରାଣ ଡ଼କ୍ଟର ଆଲ୍‌ବର୍ଟ ସ୍ବଏଚର୍ କଲେଜରେ ଆଇ.ଏସ୍‌ସି ପଢ଼ିଲାବେଳେ ଭାବିଲେ—ସେ ଜୀବନରେ କ'ଣ କରିବେ ? ଖାଲି ସାଧାରଣ ଲୋକଭଳି ଖାଇପିଇ, ମଉଜ୍‌ମଜ୍‌ଲିସ୍ କରି ଜୀବନ କଟେଇବେ ନା କିଛି ଅସାଧାରଣ କାମ କରିବେ ? କିଛି କରିବେ ପର ପାଇଁ ? ଦୁଃଖୀର ଦୁଃଖ ଲାଘବ ପାଇଁ ? ସେ ସ୍ଥିର କଲେ—ନା, ତାଙ୍କୁ ତିରିଶ ବର୍ଷ ହେବାଯାଏ ସେ ନିଜପାଇଁ ସବୁ କରିବେ—ଜ୍ଞାନ ଅର୍ଜନ କରିବେ, ଧନ ଅର୍ଜନ କରିବେ, ସମ୍ମାନ ଅର୍ଜନ କରିବେ । କିନ୍ତୁ ତିରିଶ ବର୍ଷପରେ ଆଉ ନିଜପାଇଁ କିଛି କରିବେ ନାହିଁ । ତେଣିକି ସବୁ କରିବେ ପର ପାଇଁ—ଦୀନ, ଦୁଃସ୍ଥ, ଦଳିତ, ପତିତ, ଅରକ୍ଷିତଙ୍କ ପାଇଁ । ଏବଂ ତାହାହିଁ ସେ କଲେ ଯେତେ ଦୁଃଖ, ଦୁର୍ଦ୍ଦିନ, ଝଡ଼ଗତି, ଅନ୍ଧକାର ଗତି ଆସିଲେ ବି ନିଜର ଜ୍ଞାନ, ଧନ, ସମ୍ମାନ ପାଇଁ ଆଉ ତିଳାର୍ଦ୍ଧେ ଚିନ୍ତା କଲେନାହିଁ ।

ଲକ୍ଷ୍ମୀନାରାୟଣ ସାହୁ ଠିକ୍ ଆଲ୍‌ବର୍ଟ ସ୍ବଏଚରଙ୍କ ଭଳି ଜଣେ ଅତି ନିଷ୍ଠାପର, କଷ୍ଟସହିଷ୍ଣୁ, ଉତ୍ସର୍ଗୀକୃତ ସେବକ ଥିଲେ । ସେ ବି ସେମିତି ଜୀବନର ସବୁ ସ୍ବେଦ, ଅଶ୍ରୁ, ରକ୍ତ, ଶରୀର, ଆତ୍ମା ଦେଇ ଦେଇଥିଲେ ଜନସେବାରେ । ସେବାହିଁ ଥିଲା ତାଙ୍କ ଜୀବନର ଏକମାତ୍ର ବ୍ରତ, ପଥ ଓ ଲକ୍ଷ୍ୟ । କିନ୍ତୁ ତାଙ୍କର ମାର୍ଗ ଥିଲା ଟିକିଏ ଭିନ୍ନ । ଜନସେବା ସଙ୍ଗେସଙ୍ଗେ ଜ୍ଞାନସେବାକୁ ସେ କେବେ ଭୁଲି ନଥିଲେ । ବୋଧେ ଏଣୁତିଶାଳରୁ ଜନତା ଜୁଇ ଯାକେ ସେ

ଖାଲି ପଢୁଥିଲେ, ପଢୁଥିଲେ ଜ୍ଞାନ ଆହରଣ କରୁଥିଲେ । ତାଙ୍କର ଜ୍ଞାନପିପାସା ଥିଲା ସବୁଦିନେ ଅଦମ୍ୟ, ଅତୃପ୍ତ, ଅଶାନ୍ତ । ତେଣୁ ସେ ଥିଲେ ଆଜୀବନ ଛାତ୍ର, ଆଜୀବନ ଶିକ୍ଷକ, ଆଜୀବନ ଶିକ୍ଷାର୍ଥୀ, ବିଦ୍ୟାର୍ଥୀ ।

ସେ ଭାବୁଥିଲେ ଆତ୍ମାର ଉନ୍ନତି ପାଇଁ ଅନ୍ୟର ସେବା କରିବା, ଅନ୍ୟଭିତରେ ନିଜକୁ ହଜେଇଦେବା, ମିଶେଇଦେବା, ମିଳେଇଦେବା ଯେମିତି ଲୋଡ଼ା–ଅହମିକାକୁ ଫୋପାଡ଼ି କରଡ଼ି, ଚ ନ୍ଦ୍ରନା କରି ପଶୁରୁ ମଣିଷ ହେବା ଯେମିତି ଲୋଡ଼ା, ଅଧିକ ଜ୍ଞାନ ଅର୍ଜନ କରି ଆତ୍ମାକୁ ଆଲୋକିତ କରିବା, ଉଦ୍‌ଭାସିତ କରିବା ସେମିତି ଲୋଡ଼ା । ତେଣୁ ସେବାପାଇଁ ଯେମିତି ପାଗଳ, ଜ୍ଞାନ ପାଇଁ ତତୋଽଧିକ ପାଗଳ, ଗୁଲୁଗୁଲୁ ପାଠପଢ଼ା, କଥା କହୁଁକହୁଁ ଲେଖିବା, ଶିଖିବା, ଟିପିବା ଗୋଟାକପରେ ଗୋଟା, ଗୁରିଟା ଏମ୍ ଏ ପାଶ୍ କରିବା, ଗୋଟାଏ ଏମ୍.ଏ ଫେଲ୍‌ହେବା, କାବ୍ୟତୀର୍ଥ ପଢିବା, ଇଂଜିନିୟରିଂ ପଢିବା, କଷ୍ଟ ଏକାଉଣ୍ଟାନ୍‌ସି ପଢିବା, ବାଷଠି ବର୍ଷରେ ଶ୍ୱାସରେ ସାରଗତି ଅନିଦ୍ରାହୋଇ ଭୀଷଣ କଷ୍ଟ ପାଉଥିଲାବେଳେ ଇତିହାସରେ ଏମ୍.ଏ ପରୀକ୍ଷାପାଇଁ ଭୟଙ୍କର ସଂଗ୍ରାମ କରିବା, "ଓଡ଼ିଶାରେ ଜୈନଧର୍ମ" "ଓଡ଼ିଶା ଓ ଜୈନଧର୍ମ" ଦୁଇଖଣ୍ଡ ପ୍ରାମାଣିକ ଗ୍ରନ୍ଥ ଲେଖିବା, କୋରପୁଟର ଘନ ଜଙ୍ଗଲରେ ବୁଲିବୁଲି ଆଦିବାସୀଙ୍କ ସମ୍ପର୍କରେ ତଥ୍ୟ ସଂଗ୍ରହ କରି "The Hill Tribes of Jeypore" "Springs of the Soul" ଦଣ୍ଡନାଟ, "ଦେବକିରୀ" ଗାନ୍ଧର୍ବିକା ଶତଦଳ ଆଦି ଗବେଷଣାତ୍ମକ ପୁସ୍ତକ ଲେଖିବା, ବଙ୍ଗଳା, ହିନ୍ଦୀ, ଇଂରେଜି, ଓଡ଼ିଆରେ ଗଭୀର ଜ୍ଞାନ ଅର୍ଜନକରି ସେଇ ସେଇ ଭାଷାରେ ଗଣିଗଣି କବିତା ଲେଖିବା କମ୍ ବାହାଦୂରୀର କଥା ନହେଁ । ଆଉ ଏଇ ଅଗାଧ ଜ୍ଞାନପାଇଁ ସେ କ'ଣ ପୁରସ୍କାର ପାଇଲେ ଜାଣନ୍ତି ?

ଉତ୍କଳ ବିଶ୍ୱବିଦ୍ୟାଳୟରୁ 'ଡ଼ି.ଲିଟ୍' ପୃଥିବୀ ଜୈନ ମିଶନରୁ 'ଇତିହାସ-ରତ୍ନ' ଆନ୍ଧ୍ର ଇତିହାସ ପ୍ରତ୍ନତତ୍ତ୍ୱ ସମିତିରୁ 'ଭାରତ ତୀର୍ଥ' ଗୀତାରେ ପାରଦର୍ଶିତା ପାଇଁ 'ତତ୍ତ୍ୱନିଧି' ବଙ୍ଗଳା ସାହିତ୍ୟରେ ନିପୁଣତା ପାଇଁ 'ବିଦ୍ୟାରତ୍ନ' ଓ ସର୍ବୋପରି, ଭାରତ ସରକାରଙ୍କଠାରୁ 'ପଦ୍ମଶ୍ରୀ' ତାହାଙ୍କର ଏହି ଗୌରବ ଓଡ଼ିଶାକୁ ଗୌରବାନ୍ୱିତ କରିଛି ।

ନିହାତି ପାଗଳ ହୋଇ ବିଭୋର ହୋଇ, ବିହ୍ୱଳ ହୋଇ ଜୀବନ ସାର ପଢ଼ିପଢ଼ି ଗଭୀର ଜ୍ଞାନ ଅର୍ଜନ ନକଲେ କିଏ ଏତିକି କରିପାରିବ ? ସେ କହୁଥିଲେ–ଯିଏ ପାଠପଢ଼େ ସିଏ ବ୍ରାହ୍ମଣ, ଯିଏ ପାଠ ନ ପଢ଼େ ସିଏ ହାଡ଼ି । ସେ କହୁଥିଲେ–ପାଠ ମଣିଷକୁ ଠାକୁର କରିଦିଏ, ପାଠ ନଥିଲେ ମଣିଷ କୁକୁର ହୋଇଯାଏ । ଇଂରେଜ ପ୍ରାବନ୍ଧିକ ବେକନଙ୍କ ଭଳି ତାଙ୍କର ବି ଦୃଢ଼ ଧାରଣା–Knowledge is strength. ଜ୍ଞାନହିଁ ବଳ । ତାଙ୍କର ବିଶ୍ୱାସ ଥିଲା–ଏ ଜନ୍ମର ବିଦ୍ୟା ଓ ଜ୍ଞାନ ପ୍ରାରବ୍ଧ କର୍ମ ରୂପେ ଆର ଜନ୍ମରେ ନିଶ୍ଚୟ ସାହାଯ୍ୟ କରେ । ତା' ନ ହେଲେ ଜଗଦ୍‌ଗୁରୁ ଶଙ୍କରାଚାର୍ଯ୍ୟ ମାତ୍ର ନଅବର୍ଷ ବୟସରେ ସମସ୍ତ ବେଦ, ବେଦାନ୍ତ ଅଧ୍ୟୟନ ସାରିଲେ କିପରି ?

ଲକ୍ଷ୍ମୀନାରାୟଣଙ୍କର ବହି ପଢ଼ାରେ ଯେମିତି ଗୋଟାଏ ପ୍ରଚଣ୍ଡ ଝୁଙ୍କ୍ ଥିଲା, ସେମିତି ତାଙ୍କର ଗୋଟାଏ ଅସାଧାରଣ ସ୍ମରଣ ଶକ୍ତି ଥିଲା । ଯାହା ପଢୁଥିଲେ ସାଙ୍ଗେସାଙ୍ଗେ ମନେ ରଖି ଦେଉଥିଲେ । ରିଟାର୍ଡ ଆକାଉଣ୍ଟାଣ୍ଟ ଶ୍ରୀହୃଦୟାନନ୍ଦ ନାୟକ କହନ୍ତି–ସେ କେମିତି ଜଗତ୍‌ପୁର ଷ୍ଟେସନରୁ ଉପରପୁର ଶରତ ପଟ୍ଟନାୟକଙ୍କ ଘରକୁ ଗଳିଗଳି ଯାଉଁଯାଉଁ (ମାତ୍ର ତିନିମାଇଲ ବାଟ-ଭିତରେ) ଏକ ବିରାଟ ବହି "Mother" (ମ୍ୟାକସିମ ଗର୍କିଙ୍କ ଲିଖିତ) ପଢ଼ି ଶେଷ କରିଦେଲେ । ତାପରେ ଶରତବାବୁ, ହୃଦାନନ୍ଦବାବୁ ବହିରୁ ଯାହା ଯାହା ପ୍ରଶ୍ନକଲେ, ସେ ତା ସାଙ୍ଗେସାଙ୍ଗେ ଉତ୍ତର ଦେଲେ ପୂର୍ବାପର ସଙ୍ଗତି ସହ । ସେ କେମିତି ପ୍ରିନ୍ସ୍ କ୍ରପ୍‌ଟୋକିନଙ୍କର "Conquest of Bread" ପଢ଼ିବାପାଇଁ ପାଗଳ ହୋଇ ବୈଶାଖର ପ୍ରଚଣ୍ଡ ଖରାରେ ପାସେଞ୍ଜର ଟ୍ରେନ୍‌ରେ କଟକରୁ ହରିଦାସପୁର ଯିବାକୁ ଜିଦ୍ ଧରିଥିଲେ, ଆଉ ହୃଦାନନ୍ଦବାବୁ ତାଙ୍କୁ କେତେ କଷ୍ଟରେ ନିବର୍ତ୍ତାଇଥିଲେ ।

ଅଧ୍ୟାପକ ଶ୍ରୀ ରାଜକିଶୋର ରାୟ କହନ୍ତି–"ଲକ୍ଷ୍ମୀନାରାୟଣଙ୍କର ଜୀବନର ବିଶିଷ୍ଟ ଗୁଣ ହେଉଛି ସର୍ବଦା ଅଧ୍ୟୟନରତ ରହିବା । ତାଙ୍କର ପ୍ରକୃତ ଶକ୍ତି ଏହି ଜ୍ଞାନ ସଂଗ୍ରହରେ ନିହିତ ଥିଲା । ବହୁ ଗ୍ରନ୍ଥାଗାରର ସଭ୍ୟ ଭାବରେ ସେ ପୁସ୍ତକ ପାଠରେ ବ୍ରତୀ ରହି ଦେଶ ବିଦେଶର ଅନେକ ଉତ୍କୃଷ୍ଟ

ଗ୍ରନ୍ଥାଲୋଚନାରୁ ଯାହା ଗ୍ରହଣ କରୁଥିଲେ, ତାହା ତାଙ୍କର ବ୍ୟକ୍ତିତ୍ୱକୁ ଅସାମାନ୍ୟ ପ୍ରକାରେ ବିଭୂଷିତ କରୁଥିଲା ।"

(ଚିରଯୌବନ ଚିରବସନ୍ତ–ପୃ ୬୪) ।

ପ୍ରଫେସର ଶତ୍ରୁଘ୍ନନାଥ କହନ୍ତି–ସେ (ଲକ୍ଷ୍ମୀନାରାୟଣ) ଏକାନ୍ତ ପୁସ୍ତକ-ପାଠ-ପ୍ରିୟ । ପ୍ରଖ୍ୟାତ ବୈଜ୍ଞାନିକ ଯୋଗେଶଚନ୍ଦ୍ର ରାୟ ବିଦ୍ୟାନିଧି କଲିକତାରେ ଥାନ୍ତି । ମୃତ୍ୟୁର ଅଳ୍ପ କେତେଟା ମାସ ବାକି ଥାଏ । ତାଙ୍କ ଛାତ୍ର ଲକ୍ଷ୍ମୀନାରାୟଣ ତାଙ୍କୁ ଭକ୍ତି ଦେଖାଇବା ପାଇଁ ସାକ୍ଷାତ୍ କରିଛନ୍ତି । ତାଙ୍କଠାରୁ ଶୁଣାଯାଏ ଯେ ବାର୍ଦ୍ଧକ୍ୟରେ ମଧ୍ୟ ଅଧ୍ୟାପକ ଯୋଗେଶ ଚନ୍ଦ୍ର ମାସକୁ ଖଣ୍ଡିଏ କରି ନୂଆ ବହି ପଢୁଥାନ୍ତି । କିନ୍ତୁ ସେଥିରେ ସେ ସନ୍ତୁଷ୍ଟ ନଥାନ୍ତି । ଏହାକୁ ଲକ୍ଷ୍ୟ କରି ଲକ୍ଷ୍ମୀନାରାୟଣ ବାବୁ ନିଜ ପ୍ରତିକ୍ରିୟା ପ୍ରକାଶ କରି କହନ୍ତି ମୁଁ କ'ଣ କରୁଛି ? କେତେ ଖଣ୍ଡ ବହି ମାସକୁ ପଢୁଛି ? ମୋର ବୟସ ତାଙ୍କ ବୟସର ଅଧରୁ ଟିକିଏ ବେଶୀ । ସେପରି ସ୍ଥଳରେ ମାସକୁ ମୋର ଦୁଇଖଣ୍ଡରୁ ଅଧିକ ବହି ପଢିବା ଉଚିତ ନୁହେଁ କି ? ଜୀବନଯାକର ଏହି ଅସନ୍ତୋଷ ତାଙ୍କୁ ଜ୍ଞାନସେବୀ କରିଥିଲା । (ଚିରଯୌବନ ଚିରବସନ୍ତ–ପୃ ୪୮)

ସତରେ, ତାଙ୍କର ଜୀବନସାରା ଏହି ପ୍ରଚଣ୍ଡ ପଢ଼ାର ଝୁଙ୍କ୍ ନ ଥିଲେ ସେ ଗୋଟାକ ପରେ ଗୋଟାଏ ଏତେ ଏମ୍.ଏ ପରୀକ୍ଷା ଏତେ ଅଳ୍ପଦିନ ପଢି ଦେଇପାରନ୍ତେ କିପରି ? ତାଙ୍କ ଏମ୍.ଏ ପରୀକ୍ଷା ସମ୍ପର୍କରେ ସେ ନିଜେ କ'ଣ କହନ୍ତି । ଶୁଣନ୍ତୁ ।

## ମୋ ଏମ୍.ଏ. ପରୀକ୍ଷା

ଦିନେ ମୁଁ ଭାବୁଛି ଖାଲି ସମାଜ ସେବା କଲି, ଆଉ କିଛି ପାଠଶାଠ ପଢିଲି ନାହିଁ । ଦିନକୁ ଦିନ ମୂର୍ଖ ହୋଇଗଲି, ଏହିପରି ଅବସ୍ଥାରେ କଟକ ମିଶନ ସ୍କୁଲର ମୋର ପୂର୍ବତନ ଛାତ୍ର ସୁଶୀଲ ଗୁପ୍ତ ସାଇକେଲରେ ମୋ ତିନିକୋଣିଆ ବଗିଚା ଅଫିସ ବାଟ ଦେଇ ଯାଉଥିଲା । ସେ ମୋତେ ଦେଖି ହଠାତ୍ ନମସ୍କାର କଲା । ଆଉ ମୁଁ ତାକୁ ପଚାରିଲି–ସୁଶୀଲ୍, ଏବେ କ'ଣ କରୁଛ ? ସେ କହିଲା–ସାର୍, ଏବେ ଏମ୍:ଏ ପରୀକ୍ଷା ଦେବି । ମୁଁ ପଚାରିଲି–

ଏମ୍‌:ଏ ପରୀକ୍ଷା କେବେ ? ସେ କହିଲ—ନଭେମ୍ବର ୪ ତାରିଖରେ । ମୁଁ କହିଲି—ମୁଁ ଏମ୍‌:ଏ ପରୀକ୍ଷା ଦେଲେ ହୁଅନ୍ତା ନା.ହିଁ ? ସେ ପଚାରିଲ—ଆପଣ କ'ଣ ଟଙ୍କା ଦେଇ ସାରିଛନ୍ତି ? ମୁଁ କହିଲି—ନା । ......ହୁଁ ଦେଖନ୍ତୁ, କଲିକତା ଇଉନିଭରସିଟି ହୁଏତ ଆପଣଙ୍କୁ ଅନୁମତି ଦେଇପାରେ ।

ମୁଁ ସଙ୍ଗେ ସଙ୍ଗେ ପୋଷ୍ଟ ଅଫିସକୁ ଯାଇଁ ପାଶ୍‌ବହିରୁ ଶହେ ଟଙ୍କା ବାହାର କରି ଅକ୍ଟୋବର ୨୭ ତାରିଖରେ କଲିକତା ୟୁନିଭରସିଟି ରେଜିଷ୍ଟ୍ରାରଙ୍କ ନାମରେ ଶହେଟଙ୍କା ମନିଅର୍ଡର କଲି । ତା'ପରେ କଲିକତା ଗଲି ଓ ପରୀକ୍ଷା ଦେଲି । କେଉଁଥିରେ ପରୀକ୍ଷା ଦେବି କିଛି ଜାଣି ନଥିଲି । କଲିକତାକୁ ଯାଇଁ ଶୁଣିଲି Indian Vernacular (ସଂସ୍କୃତ, ହିନ୍ଦୀ, ବଙ୍ଗଳା) ନାମରେ ଗୋଟିଏ ଏମ୍.ଏ ପରୀକ୍ଷା ହୁଏ । ମୁଁ ସେଥିରେ ପରୀକ୍ଷା ଦେବା ପାଇଁ ସ୍ଥିର କଲି ଏବଂ ପରୀକ୍ଷା ଦେଲି । ଦଇବର ଆନୁକୂଲ୍ୟରେ ମୁଁ ଉକ୍ତ ବିଷୟରେ ଦ୍ୱିତୀୟ ଶ୍ରେଣୀରେ ପାଶ୍‌କରି ହଠାତ୍ ଏମ୍.ଏ ହୋଇଗଲି । ପ୍ରାୟ ଦୁଇଶହ ଟଙ୍କା ଖର୍ଚ୍ଚ ଏବଂ ସର୍ବମୋଟ ଦୁଇଶହ ଘଣ୍ଟା ପରିଶ୍ରମ । ସେଥିରେ ଏମ.ଏ ହେଲି । First Class ହେବାକୁ ଆଉ ୧୬ ନମ୍ବର ମାତ୍ର ବାକି ଥିଲ । ମନେ ମନେ ମୁଁ ବି ଟିକେ ଗର୍ବ ଅନୁଭବ କଲି ଯେ ମୁଁ ମଧ୍ୟ ଜଣେ ଏମ୍,ଏ ।

କିଛି ଦିନ ଗଲ । କେତେକ ବନ୍ଧୁଙ୍କ ସଙ୍ଗେ କଥାବାର୍ତ୍ତା ହେଉଥାଏ । ସେମାନଙ୍କ ମଧ୍ୟରୁ କେହି କେହି କହିଲେ—ଭର୍ଣ୍ଣାକୁଲରରେ ଏମ୍.ଏ ହେବାଟା କ'ଣ ବାହାଦୂରୀ ? Economicsରେ ଏମ୍.ଏ ହେଇ ଥାଆନ୍ତ କି ? ମୋର ଏମ୍.ଏ ଗର୍ବରେ ଟିକିଏ ବ୍ୟାଘାତ ଘଟିଲ । ମନେମନେ ଭାବୁଥାଏ Economicsରେ ଟିକିଏ ଏମ୍.ଏ ହୁଅନ୍ତି କି ? ପାଟନାରୁ ବାହାରୁଛି, କଲିକତାରେ ଶୁଣିଲି ଯେ ଏମ୍.ଏ ପରୀକ୍ଷା ନିକଟରେ ହେବ । ଆଉ ଛ' ସାତ ଦିନ ବାକି ଅଛି । ମୋ ମନଟା ସକ୍‌ସକ୍ ହେଲ । ମୁଁ ମୋର ବନ୍ଧୁ ପ୍ରିୟରଞ୍ଜନ ସେନ୍‌କୁ ଧରି ଟଙ୍କା ଦାଖଲ କଲି ଏବଂ ଛ'ସାତ ଦିନ ପରେ ଏକୋନମିକ୍‌ସ୍‌ରେ ଏମ୍ ଏ ପରୀକ୍ଷା ଦେବାକୁ ବସିଲି । ଦୈବକ୍ରୁ ଏଥିରେ ମଧ୍ୟ ପାଶ୍ ହୋଇଗଲ, କିନ୍ତୁ ପଢ଼ାପଢ଼ି ତ ସେପରି କିଛି ନଥିଲ । ସେଥିପାଇଁ Third Class ହୋଇଗଲ ।

ଏହାପରେ ମୁଁ ଘରେ ଅଛି । Star of Utkalରେ ଲେଖାଲେଖି କରୁଛି । ମୋର ଜଣେ ବନ୍ଧୁ ନିମାଇଁଚରଣ ମୋ ପାଖକୁ ଆସିଲେ ଗ୍ରାମ ସଙ୍ଗଠନ ସମ୍ପର୍କରେ ଗୋଟିଏ ପ୍ରବନ୍ଧ ନେବା ପାଇଁ । ସେ କହିଲେ ହରିହର ମହାପାତ୍ର, ଆଡ୍‌ଭୋକେଟ, ଇଂରେଜିରେ ଏମ୍.ଏ । ସୁତରାଂ ସେ ଯେପରି ପ୍ରବନ୍ଧ ଲେଖିବେ ଆପଣ କ'ଣ ସେପରି ଲେଖି ପାରିବେ ? ଏଥିରେ ମୋର ଏକୋନମିକସ୍ ପାଶ କରିବା ଗର୍ବ ମଧ୍ୟ ଭୁଷୁଡ଼ି ପଡ଼ିଲା । ଅବଶ୍ୟ ମୁଁ ଗୋଟିଏ ପ୍ରବନ୍ଧ ସାଙ୍ଗେସାଙ୍ଗେ ନିମାଇଁଙ୍କୁ ଡାକିନେଲି ଏବଂ ତାହା ଇଂରେଜୀ ରଚନା ବହି ସଂଗ୍ରହରେ ପ୍ରକାଶିତ ହୋଇଛି ।

ତାହାପରେ ୧୯୩୩ ସାଲର କଥା । ମୁଁ ବିହାରର ପାଟ୍‌ନାକୁ ଯାଇଥିଲି ସହଯୋଗ ସମିତିର ପ୍ରାଦେଶିକ ବ୍ୟାଙ୍କର ଗୋଟିଏ ମିଟିଂ ପାଇଁ । ମିଟିଂ ସାରି ଶୁକ୍ରବାର ରାତିରେ ପାଟ୍‌ନାରୁ ବାହାରି କଲିକତା ଆସିଲି । ଶନିବାର ଦିନ ଏଗାରଟାରେ ପହଞ୍ଚିଲି । ସେହିଦିନ କଲିକତା ବିଶ୍ୱବିଦ୍ୟାଳୟକୁ ଗଲି ମୋର ବନ୍ଧୁ ପ୍ରିୟରଞ୍ଜନ ସେନ୍‌ଙ୍କ ସଙ୍ଗେ ଦେଖା କରିବା ପାଇଁ । ତାଙ୍କଠାରୁ ଶୁଣିଲି ଆଗାମୀ ସୋମବାର ଦିନ ଏମ୍.ଏ ପରୀକ୍ଷା ଆରମ୍ଭ । ମୋର ମନ ସକ୍‌ସକ୍ ହେଲା । ମୁଁ ଇଂରେଜିରେ ଏମ୍.ଏ ପରୀକ୍ଷା ଦେବାକୁ ଗୁହାରିଲି । ପ୍ରିୟରଞ୍ଜନବାବୁ କହିଲେ—ଏ କି ପାଗଳାମି ? ଅନ୍ତତଃ ବର୍ଷେ ଭଲକରି ପଢ଼ନ୍ତୁ । ତା'ପରେ ପରୀକ୍ଷା ଦେବେ । ଆଉ କହିଲେ—ଏକୋନମିକ୍‌ସ୍ ସାଧାରଣ ଜ୍ଞାନରେ ଏମ୍.ଏ ପାଶ କରି ଦେଇଛନ୍ତି ବୋଲି ଆପଣ ଭାବୁଛନ୍ତି ଇଂରେଜିରେ ମଧ୍ୟ ସେପରି ପାଶ କରିଯିବେ ? ଅସମ୍ଭବ । ଚସରଙ୍କ (Chaucer) old English ପଢ଼ିବାକୁ ହେବ । ଆପଣ ପଢ଼ିଛନ୍ତି ? ଆଉସବୁ କଥା ପଚାରିଲେ । ସେ କହିଲେ—ଏ ଖେଳ ଘର ନୁହେଁ । ଅନ୍ତତଃ ଦୁଇଶହ ଖଣ୍ଡ ବହି ପଢ଼ିବାକୁ ହେବ । ମୁଁ କହିଲି—ଯାହାହେଉ ଆପଣ ଟିକେ ପରୀକ୍ଷା ଦେବାର ଅନୁମତିଟା କରାଇ ଦିଅନ୍ତୁ ତେଣିକି ଯାହା ହେବାର ହେବ । ସେ ବଡ଼ ବିରକ୍ତ ହେଲେ । ତଥାପି ମୋତେ ସାଙ୍ଗରେ ନେଇ ଆସିଷ୍ଟାଣ୍ଟ ରେଜିଷ୍ଟ୍ରାର ପାଖକୁ ଗଲେ ଏବଂ ତାଙ୍କୁ ପଚାରିଲେ ଆଉ ସିନେଟ ଏବଂ ସିଣ୍ଡିକେଟ୍ ମିଟିଂ ଅଛି କି ନାହିଁ । ସେ କହିଲେ ଆଜି ସିନେଟ୍ ମିଟିଂ ରାତି ଆଠଟାରେ ଏବଂ ସିଣ୍ଡିକେଟ୍ ମିଟିଂ ସନ୍ଧ୍ୟା ଛଅଟାରେ । ତେବେ ପ୍ରିୟରଞ୍ଜନ ତାଙ୍କୁ କହିଲେ, ହଉ ଏ

ଦରଖାସ୍ତ ଓ ଟଙ୍କାଟା ରଖନ୍ତୁ, ଯେପରି ହେଉ ଅନୁମତି କରାଇ ଦେବେ । ଏହି ଭଦ୍ରଲୋକଟି ମତେ ବଡ଼ ବ୍ୟସ୍ତ କରୁଛନ୍ତି ।

ତା'ପରେ ସୋମବାର ଦିନ ପରୀକ୍ଷା । ପରୀକ୍ଷା ଆଗରୁ ମୁଁ ଗୋଟିଏ ଖମ୍ବ ପାଖରେ ଠିଆ ହୋଇଛି, ପ୍ରିୟରଞ୍ଜନ ମୋର ଏଡ୍‌ମିଟ୍ କାର୍ଡ ଆଣି ଦେଲେ । ମୁଁ ସେହି କାର୍ଡ ଧରି ପରୀକ୍ଷା ଦେବାକୁ ଗଲି । ଦୈବକୁ ଏଥର ବି ପାଶ୍ କରିଗଲି । ଦିନେ ବୁଲି ଯାଇଥିଲି । ଘରକୁ ଫେରିଆସି ଦେଖେ ମୋ ଟେବୁଲ ଉପରେ ପ୍ରିୟରଞ୍ଜନ ଲେଖିଥିବା ଗୋଟିଏ ପୋଷ୍ଟକାର୍ଡ ରହିଛି ଏବଂ ସେଥିରେ ସେ ଲେଖିଛନ୍ତି—ମୁଁ ଆଶ୍ଚର୍ଯ୍ୟ ହେଉଛି ଆପଣ ପାଶ୍ କଲେ କିପରି ? ମୁଁ ମଧ୍ୟ ଆଶ୍ଚର୍ଯ୍ୟାନ୍ୱିତ ହେଲି । ପାଶ୍‌ମାର୍କ ସବୁ ମିଶାଇ ଦେଖିଲି ଖାଲି ପାଶ୍ ନୁହେଁ, ପ୍ରତି ପେପରରେ ମଧ୍ୟ ପାଶ୍ ହୋଇଛି । ଏ ହେଉଛି ୧୯୩୩ ଖ୍ରୀଷ୍ଟାବ୍ଦର କଥା ।

ଏହାପରେ ସାତ ବର୍ଷ ବିତିଗଲା । ମୋ ମନ ଥରେ ଭାରି ଖରାପ ଥାଏ । ଘରେ ମୋର କୋଉଁ ମୋର ବିରୁଦ୍ଧରେ ଚାଲିଥାଏ । ଶାନ୍ତି ପାଇବା ପାଇଁ ଭାବିଥିଲି କଲିକତା ଚାଲିଯିବି । କୌଣସି ଗୋଟିଏ ଏମ୍.ଏ ପରୀକ୍ଷାରେ ଲାଗିଯିବି । ଜୁଲାଇ ମାସ ପ୍ରଥମ ସପ୍ତାହରେ ପୁନାରୁ ଫେରି ଆସି କଟକରେ ପହଞ୍ଚିଲି ଏବଂ ପ୍ରିୟରଞ୍ଜନକୁ ଚିଠି ଲେଖିବାରେ ଜାଣିଲି ଯେ ଜୁଲାଇ ମାସ ଅଠରରେ ଏମ୍.ଏ. ପରୀକ୍ଷା । ଦୁଇ ଚାରିଦିନ ପରେ କଲିକତା ଗଲି । ଏଥର ଫିଲୋସଫିରେ ଏମ୍.ଏ. ଦେଲି । ମୋର ଅଧ୍ୟାପକ ଶ୍ରୀଯୁକ୍ତ ହେମଚନ୍ଦ୍ର ସରକାର ପଢ଼ାଉଥିଲା ବେଳେ ମୋତେ ବରବର କହୁଥିଲେ—ଲକ୍ଷ୍ମି, ତୁମେ ଫିଲୋସଫର ହେବ । .........ହଠାତ୍ ମୁଁ ଭାବିଲି, କାହିଁ ଫିଲୋସଫି ତ କିଛି ପଢ଼ିନାହିଁ । ଏମ୍.ଏ. ପରୀକ୍ଷାରେ ଫିଲୋସଫିବହିମାନ ପଢ଼ିଲି ଦଶଦିନ ମଧ୍ୟରେ । ପରୀକ୍ଷା ଦେଲି । ଉତ୍ତରରେ ଖୁବ୍ ଭଲ ଲେଖିଛି ବୋଲି ମନରେ ଖୁବ୍ ଆନନ୍ଦ ହେଉଥାଏ । ଶେଷକୁ ମୁଁ ଫିଲୋସଫି ଫେଲ । ଗୋଟିଏ ପେପରରେ ବାଇଶ ନା ତେଇଶ ଅଛି, ଆଉ ଦୁଇ ନମ୍ବର ଥିଲେ ମାର୍କ ଗଣା ହୋଇଥାନ୍ତା । କିନ୍ତୁ ତାହା ହୋଇ ପାରିଲା ନାହିଁ । ହଉ, ମୁଁ ପୂର୍ବ ପରୀକ୍ଷାରେ Essayରେ ଶତକଡା ୬୫, ୭୦, ୮୦, ୯୦ ଏପରି ପାଇଥିଲି । ମୋର Essay Paperରେ ୪୨

ନା କ'ଣ ରହିଥିଲା । ଏମ୍.ଏ. ପାଶ୍ ଆଉ ଏମ୍.ଏ. ଫେଲ୍ ଏହି ଦୁଇରେ ମୋର ପାଠପଢ଼ାର ସମସ୍ତ ଅଭିଯାନ ଚୂର୍ଣ୍ଣ ହୋଇଯାଇଛି ।"

(ମୋ ବାରବୁଲା ଜୀବନ—ପୃ ୯୩-୯୭)

ଏହାପରେ ଦୀର୍ଘ ଚଉଦ ବର୍ଷ ପରେ ୧୯୫୪ ମସିହାରେ ଚଉଷଠି ବର୍ଷ ବୟସରେ ଲକ୍ଷ୍ମୀନାରାୟଣ ପୁଣି ତାଙ୍କ ନାତିନାତୁଣୀ ଭଳି ପୁଅଝିଅଙ୍କ ସାଙ୍ଗରେ ଇତିହାସରେ ଏମ୍.ଏ. ପରୀକ୍ଷା ଦେଇଥିଲେ । ଏଥର ଉତ୍କଳ ବିଶ୍ୱବିଦ୍ୟାଳୟରେ । ହାତ ଥୁରୁଥୁରୁ, ଦେହ ଥୁରୁଥୁରୁ, ଘନଘନ ଆକ୍ରମାର ଧଇଁକାଶ । ଆରାମ ଚେୟାରରେ ଶୋଇ ଶୋଇ, ବସି ବସି ଲକ୍ଷ୍ମୀନାରାୟଣ ଦେଲେ ପରୀକ୍ଷା, ଆଉ ପାଶ୍ କରି ଉତ୍କଳ ବିଶ୍ୱବିଦ୍ୟାଳୟର ଏକାଦଶ ସମାବର୍ତ୍ତନ ଉତ୍ସବରେ ନେଲେ ଏମ୍.ଏ. ଡ଼ିଗ୍ରୀ ଚାନ୍ସେଲର୍ ଓ୍ୟାଇ.ଏନ୍. ସୁଖଙ୍କରଙ୍କଠାରୁ ।

ଏହି ସମାବର୍ତ୍ତନ ଉତ୍ସବକୁ ଲକ୍ଷ୍ୟ କରି ଜଷ୍ଟିସ୍ ହରିହର ମହାପାତ୍ର ଲେଖିଛନ୍ତି—

"ଲେଖାପଢ଼ାରେ ଆଗ୍ରହ ତାଙ୍କର (ଲକ୍ଷ୍ମୀନାରାୟଣଙ୍କର) ଥିଲା ଅତି ବିପୁଳ । ତା' ନ ହୋଇଥିଲେ ପରିଣତ ବୟସରେ ତାଙ୍କ ନାତିନାତୁଣୀ ସ୍ଥାନୀୟ ପିଲାଙ୍କ ସାଙ୍ଗରେ ପରୀକ୍ଷା ହଲ୍‌ରେ ବସି ଏକାଧିକ ବିଷୟରେ ଥରକୁଥର ଏମ୍.ଏ, ପରୀକ୍ଷା ଦେଇ ପାରୁନଥାନ୍ତେ । ଥରେ ବିଶ୍ୱବିଦ୍ୟାଳୟ କନ୍‌ଭୋକେସନ୍‌ରେ ଏମ୍.ଏ. ଉପାଧି ଗ୍ରହଣ କରିବା ପାଇଁ ଯେତେବେଳେ ସେ ସଭାମଞ୍ଚ ପାଖକୁ ଗାଉନ୍, ଟୋପି ପିନ୍ଧି ଗଲେ, ନବକୃଷ୍ଣ ଚୌଧୁରୀଙ୍କ ସମେତ ସମସ୍ତେ, ଯେ ଉପସ୍ଥିତ ଥିଲେ, ଘନଘନ କରତାଳିରେ ତାଙ୍କୁ ଆନନ୍ଦର ସହିତ ସମ୍ବର୍ଦ୍ଧନା ଜଣାଇଥିଲେ । ସେତେବେଳେ କି ଆନନ୍ଦ ତାଙ୍କ ମୁହଁରେ ପ୍ରକାଶ ପାଇଥିଲା, କହିହେବ ନାହିଁ । ଜ୍ଞାନର ପିପାସା ଅପୂରନ୍ତ ଥିଲା ତାଙ୍କର ଏବଂ ସେ ସର୍ବଦା ଚାହୁଁଥିଲେ, ଅନ୍ୟ ସମସ୍ତେ ଜ୍ଞାନ ଲାଭକରି ଉଚ୍ଚମନା ହୁଅନ୍ତୁ ।"

(ଚିର ଯୌବନ, ଚିର ବସନ୍ତ—ପୃ ୨୫-୨୬)

ଏମ୍,ଏ. ପରୀକ୍ଷା ଦେବାରେ ଲକ୍ଷ୍ମୀନାରାୟଣଙ୍କର ଏତେ ଝୁଙ୍କ୍ ଯେ ଉତ୍କଳ ସମ୍ମିଳନୀ ସମ୍ପାଦକ ଶ୍ରୀ ବସନ୍ତ କୁମାର ପାଣିଗ୍ରାହୀ କହନ୍ତି— ସମଗ୍ର

ଗଞ୍ଜାମରେ ଯିଏ ଗୋଟାଏ ଏମ୍.ଏ. ପରେ ଆଉ ଗୋଟାଏ ଏମ୍.ଏ. ଦେବାକୁ ଚେଷ୍ଟା କରେ, ଲୋକେ ତା'କୁ ଥଟ୍ଟାରେ କହନ୍ତି—କ'ଣ, ଲକ୍ଷ୍ମୀନାରାୟଣ ସାହୁ ହେଇଯିବୁ କି ?

ଡକ୍ଟର ସଦାଶିବ ମିଶ୍ର ଲେଖିଛନ୍ତି— 'ଲକ୍ଷ୍ମୀନାରାୟଣଙ୍କର ଏଭଳି ଉଦ୍ୟମରେ (ଏମ୍.ଏ ପରୀକ୍ଷା ଦେବା) ଉଦ୍‌ବୁଦ୍ଧ ହୋଇ ରେଭେନ୍‌ସା କଲେଜର ବ୍ୟାୟାମ ଶିକ୍ଷକ ପାରଳାଖେମୁଣ୍ଡି ନିବାସୀ ଶ୍ରୀଯୁକ୍ତ ଲକ୍ଷ୍ମୀକାନ୍ତ ଅଧିକାରୀ ଅବସର ନେଲାପରେ ଗୋଟିକ ପରେ ଗୋଟିଏ ଚାରିଗୋଟି ବିଷୟରେ ଏମ୍.ଏ. ଉପାଧି ଉପାର୍ଜନ କଲେ ।" (ଚିରଯୌବନ, ଚିରବସନ୍ତ—ପୃ ୨୮)

ଖାଲି ଏମ୍.ଏ, ପରୀକ୍ଷା ଦେବା ନୁହେଁ, ଲକ୍ଷ୍ମୀନାରାୟଣଙ୍କର ବହୁ ବିଷୟରେ ଅଗାଧ ପ୍ରବେଶ ଅଛି ବୋଲି ଅନେକ ବିଶିଷ୍ଟ ଲୋକ ତାଙ୍କୁ ଉଚ୍ଚ ପ୍ରଶଂସା କରି କହିଥାନ୍ତି । ସେମାନଙ୍କ ଭିତରୁ କବିଚନ୍ଦ୍ର କାଳିଚରଣ ଅନ୍ୟତମ, ସେ କହନ୍ତି—

"ନିଜେ ଗାଇ ବଜାଇ ଜାଣନ୍ତି ନାହିଁ—ହେଲେ ବଡ଼ ତାଜୁବ୍ କଥା । ସେ (ଲକ୍ଷ୍ମୀନାରାୟଣ) ସଙ୍ଗୀତର ତଥ୍ୟ ବୟାନ କରିଥାଆନ୍ତି ବେଳେବେଳେ— ଯାହା ତଥାକଥିତ ସଙ୍ଗୀତ ଓସ୍ତାଦମାନଙ୍କୁ ବି ଜଣାନାହିଁ । ସେ ପଢ଼ନ୍ତି—ମନେ ରଖନ୍ତି—ପୁଣି ଏତେ ମନେ ରଖନ୍ତି ଯେ, ଯାହା କହିଲେ ତାହା ତାଙ୍କ ପାଖେ ଯେମିତି କୋଉ କାଳର ପଡାପାଠ । ମୁଁ ଅଙ୍ଗେଲିଭ କଥା କହୁଛି—ସେ କେଉଁ ବିଷୟ ଉପରେ ଗ୍ରେଖା ଗ୍ରେଖା ଦି'ପଦ ନ କହିବେ, ଏପରି ନୁହେଁ, ପଢ଼ନ୍ତି ଯେମିତି, ହେତୁ ବି ରଖି ପାରନ୍ତି ସେମିତି । ଠିକଣା ବେଳରେ ଠିକଣା ଥାନରେ ଏମିତି ଉଦାହରଣମାନ ଦିଅନ୍ତି ଯେ, ମନେହୁଏ ଯେମିତି ସତେ ଘୋଷିକରି ପାଣି ପରି କରି ଅସିଛନ୍ତି ସେଇଆଡୁ । × × ×

ବରବର ସେ ମୋ ବସାକୁ ଆସୁଥିଲେ । ଥରେ ଦଳର (ଓଡ଼ିଶା ଥିଏଟର୍ସ) କେତେ ଜଣଙ୍କୁ ତାଙ୍କ ଘରକୁ ଖାଇବାକୁ ଡାକିନେଲେ । ପାଠୁଆ ପର୍ଣ୍ଣ ତପଣିଆ ଛଡ଼ା ସେ ଯେ ଜଣେ ପୋଖତ ସୁଆରେ, ସେଇଦିନ ତାଙ୍କ ରନ୍ଧା ଛେନା ତର୍କାରୀ ସେ କଥା ଚିହ୍ନାଇ ଦେଲା ।"

(ଚିରଯୌବନ, ଚିରବସନ୍ତ ପୃ ୭୦-୭୨)

ଓଡ଼ିଶାର ଜଣେ ବିଦୂଷୀ ରମଣୀ ଶ୍ରୀମତୀ ପଦ୍ମଳୟା ଦାଶ କହନ୍ତି–

"Religion, philosophy, history, tribes, literature, journalism, cooking, language, the Co-operative movement, river control, music and mainly the realm of social service—were among his interest. His intellectual curiosity was limitless. And he always seemed to have a secret store of boundless energy, despite his chronic asthma."

(ଚିରଯୌବନ, ଚିରବସନ୍ତ ପୃ ୫)

(ଧର୍ମ, ଦର୍ଶନ, ଇତିହାସ, ଆଦିବାସୀ ସମସ୍ୟା, ସାହିତ୍ୟ, ସାମ୍ବାଦିକତା, ରନ୍ଧନପ୍ରଣାଳୀ, ଭାଷା, ସମବାୟ ଆନ୍ଦୋଳନ, ନଦୀବନ୍ଧ ଯୋଜନା ଓ ବନ୍ୟା ନିୟନ୍ତ୍ରଣ, ସଙ୍ଗୀତ ଓ ମୁଖ୍ୟତଃ ସମାଜର ଦୀନ, ଦଳିତ, ପତିତ, ମଥିତମାନଙ୍କର ସେବା ପ୍ରତି ତାଙ୍କର ଗଭୀର ଧ୍ୟାନ ଥିଲା । ତାଙ୍କ ଜ୍ଞାନଲିପ୍ସା ଓ ଜ୍ଞାନପିପାସା ଅନନ୍ତ, ଅସୀମ ଥିଲା ଏବଂ ଶ୍ୱାସ ରୋଗରେ ଘନଘନ ପୀଡ଼ିତ ହେଲେ ମଧ୍ୟ ତାଙ୍କ ଭିତରର ଏଇ ଅସରନ୍ତି, ଅଫୁରନ୍ତ ଶକ୍ତିର ଭଣ୍ଡାର କେବେ ଶୂନ୍ୟ ହେଉନଥିଲା ।)

□□□

## ॥ ପାଞ୍ଚ ॥

# ଓଡ଼ିଆ-ପ୍ରାଣ ଲକ୍ଷ୍ମୀନାରାୟଣ

"ଅନ୍ଧାର ଘୁରିଅଛେ, ଚିର ଉଭି ଆଲୁଅ ଜାଳ
ଘନ ତିମିର ଗର୍ଭେ
ଏକାକୀ ପଥ ଯାତ୍ରୀ ।"

ଏଇ ଲକ୍ଷ୍ମୀନାରାୟଣ ସାହୁ । ଏଇ ତାଙ୍କ କବିତା । ଏଇ ତାଙ୍କ ପ୍ରାଣର କଥା ।

ଲକ୍ଷ୍ମୀନାରାୟଣ ଥିଲେ ଚିର ଆଶାବାଦୀ । ସବୁ ଅନ୍ଧାର ଭିତରେ, ନୈରାଶ୍ୟ ଭିତରେ, ମୃତ୍ୟୁ ଭିତରେ ସେ ଜୀବନକୁ ଠେଲିପେଲି ସବୁବେଳେ ଆଗକୁ ଆଗକୁ ମାଡ଼ିଯିବାକୁ ବ୍ୟସ୍ତ । ଏକା ନୁହେଁ, ସମଗ୍ର ଓଡ଼ିଆ ଜାତିକି ସାଙ୍ଗରେ ଧରି । ଲକ୍ଷ୍ମୀନାରାୟଣ ଥିଲେ ଅତି ନିର୍ଭୀକ, ଦୁର୍ଦ୍ଦାନ୍ତ, ଦୁର୍ଦ୍ଦମନୀୟ । କୌଣସି କଥାରେ ସେ ଦବିଯିବାର ନୁହଁନ୍ତି, ଡରିଯିବାର ନୁହଁନ୍ତି । ଯୋଉ କାମ ଧରିବେ, ସେ କାମ କରିବେ, କରିବେ, କରିବେ । ଫେରିବାର ପ୍ରଶ୍ନ ନାହିଁ । ଗୋପବନ୍ଧୁଙ୍କ ଭଷାରେ—

"ପଛଘୁଞ୍ଚା ନାହିଁ ବୀରର ଜାତକେ
ନମରେ ସେ କେବେ ପରଣ ଆତଙ୍କେ ।"

ସେମିତିକା ବୀର ଲକ୍ଷ୍ମୀନାରାୟଣ । ବେଦର ବାଣୀ 'ଚରୈବତି', 'ଚରୈବତି' ଲକ୍ଷ୍ମୀନାରାୟଣ ସାହୁଙ୍କଠାରେ ଷୋଳଅଣାରୁ ଷୋଳଅଣା ପ୍ରଯୁଜ୍ୟ । 'The Old Man and the Sea'ର ଲେଖକ ଆର୍ଣ୍ଣେଷ୍ଟ ହେମିଙ୍ଗ୍‌ୱେଙ୍କର

'I may be destroyed, but not defeated' (ମୁଁ ଧ୍ୱଂସ ହୋଇ ଯାଇପାରେ, କିନ୍ତୁ ପରାଜୟ ମୋ' ଜାତକରେ ନାହିଁ)–ଏହାର ସାର୍ଥକ ଦାୟାଦ ଲକ୍ଷ୍ମୀନାରାୟଣ ସାହୁ ।

ନିଜେ ଅତ୍ୟନ୍ତ କଷ୍ଟ ସ୍ୱୀକାର କରି, ଜୀବନସାରା ଅଧ୍ୟୟନ କରି କରି ସେ ତ ଗଭୀର ଜ୍ଞାନ ଅର୍ଜନ କଲେ, କିନ୍ତୁ ସେଇଟି ତାଙ୍କ ଜୀବନର ଶେଷ ନୁହେଁ–ଆରମ୍ଭ ; ଜୀବନର ଲକ୍ଷ୍ୟ ନୁହେଁ, ଲକ୍ଷ୍ୟସ୍ଥଳରେ ପହଞ୍ଚିବା ପାଇଁ ଗୋଟିଏ ଅବଲମ୍ବନ । ତାଙ୍କ ଲକ୍ଷ୍ୟ ନିଜେ ବଡ଼ ହେବା ବା ନିଜେ ବାହାବା ପାଇବା ମୋଟେ ନୁହେଁ । ସେ ଖାଲି ଲକ୍ଷ୍ମୀନାରାୟଣଙ୍କର ବାହାର ରୂପ । ଭିତରର ଅସଲ ରୂପଟି ହେଲା–ଅନ୍ୟକୁ ବଡ଼ କରିବା, ଅନ୍ୟକୁ ଉଠେଇବା, ଅନ୍ୟ ମୁହଁରେ ହସ ଫୁଟେଇବା । ଉତ୍ସାହ ଓ ପ୍ରେରଣାର ସେ ଥିଲେ ଅସରନ୍ତି ଉତ୍ସ । କାହାଠେଇଁ ଟିକିଏ କ'ଣ ପ୍ରତିଭା ଦେଖିଲେ, ଭଲ ଗୁଣ ଦେଖିଲେ, ସେ ତାକୁ କୁଣ୍ଢେଇ ମୁଣ୍ଡେଇ, କୋଳକରି ଉପରକୁ ଆଣୁଥିଲେ । ଆଉ ନିଜର ସବୁ ମନ ଦେଇ, ପ୍ରାଣ ଦେଇ, ଚିତ୍ତ ଦେଇ, ବିତ୍ତ ଦେଇ ତା'କୁ ପ୍ରତିଭାର ଶୀର୍ଷସ୍ଥାନକୁ ଉଠଉଥିଲେ । ଏ ବିଷୟରେ ତାଙ୍କର କିଛି ଶତ୍ରୁ ମିତ୍ର, ପରଆପଣା, ହିନ୍ଦୁ ମୁସଲମାନ ଖିରସ୍ତାନ ବାଛବିଚାର ନଥିଲା । ସେଇଥିପାଇଁ ଓଡ଼ିଶାର ପୂର୍ବତନ ମନ୍ତ୍ରୀ ଓ ପୂର୍ବତନ ଏଡ୍‌ଭୋକେଟ୍ ଜେନେରାଲ ଦୀନବନ୍ଧୁ ସାହୁ ସତୀଚଉରାରେ ଲକ୍ଷ୍ମୀନାରାୟଣଙ୍କ ଶବ ପାଖରେ ୧୯୬୩ ଜାନୁୟାରୀ ୧୮ ତାରିଖରେ କହିଥିଲେ– "ଆମେ ସମସ୍ତେ ଟେବୁଲ ଉପରୁ ଅଳିଆ କାଗଜ ଆଣି ଟେବୁଲ ତଳେ ଅଳିଆ ଟୋକେଇରେ ରଖୁ । କିନ୍ତୁ ଲକ୍ଷ୍ମୀନାରାୟଣ ସାହୁ ଗୋଟିଏ ଲୋକ ଯିଏ ଅଳିଆ ଟୋକେଇରୁ କାଗଜ ଆଣି ଟେବୁଲ ଉପରେ ରଖନ୍ତି । ସେଇ ତାଙ୍କର ମହତ୍ତ୍ୱ, ସେହି ତାଙ୍କର ହୃଦୟବତ୍ତା ।"

କବିଚନ୍ଦ୍ର କାଳିଚରଣ ପଟ୍ଟନାୟକ କହନ୍ତି–"ଲୋକର ସାମାନ୍ୟ ଗୁଣକୁ ଆଦର କରିବା, ତାକୁ ଉତ୍ସାହ ଦେବା, ତା'ର ଖ୍ୟାତିରେ ପରମ ସୁଖୀ ହେବା ପାଇଁ ତାଙ୍କ (ଲକ୍ଷ୍ମୀନାରାୟଣଙ୍କ) ଭଳି ପୁଅଟାଏ ଜୀବନରେ ଅବଧି ଦେଖି ନାହିଁ । ବାଲିଗରଡ଼ାକୁ ସାଉଁଟି ଆଣି ଖଟୁଲିରେ ଶାଳଗ୍ରାମ ଶିଳା କରିବା ଲୋକ ସେ ।" (ଚିରଯୌବନ ଚିରବସନ୍ତ–ପୃ ୭୧)

ଖାଲି ସେତିକି ନୁହେଁ, ସମଗ୍ର ଭାରତରେ ତ ଓଡ଼ିଆ ଲୋକ ପଛୁଆ, ପଛବୁଦ୍ଧିଆ, ଡ଼ରକୁରା, ଲାଜକୁଳା, ସବୁବେଳେ ହୀନମନ୍ୟତାର ଶିକାର । ଆମକୁ କଥା କହି ଆସେନାହିଁ, ଆମକୁ ଇଂରେଜି କହି ଆସେନାହିଁ, ବକ୍ତୃତା ଦେଇ ଆସେନାହିଁ, ଏପରିକି ଭଲ ପହଁରି ଆସେନାହିଁ, ଭଲ ଫୁଟବଲ ଖେଳି ଆସେନାହିଁ, ଭଲ ଅଭିନୟ କରି ଆସେନାହିଁ, ବାହାର ପ୍ରଦେଶର ଲୋକଙ୍କ ସାଙ୍ଗରେ ପ୍ରତିଯୋଗିତା କରି ବଡ଼ବଡ଼ ଚାକିରୀ କରିବାକୁ ଆମର ଯୋଗ୍ୟତା ନାହିଁ । ଯୋଗ୍ୟତା ଥିଲେ ବି ସାହସ ନାହିଁ, ଆତ୍ମବିଶ୍ୱାସ ନାହିଁ, ଠୋସ୍ ଠୋସ୍ ଇଂରେଜୀ କହିବାର ଭଙ୍ଗୀ ଆମକୁ ଜଣାନାହିଁ—ଲକ୍ଷ୍ମୀନାରାୟଣ ସମସ୍ତଙ୍କୁ ସବୁ-ବେଳେ ସ୍କୁଲ, କଲେଜ, ହଷ୍ଟେଲ ବୁଲି ବୁଲି ଏହି କଥା କହନ୍ତି ଏବଂ ପିଲାଙ୍କୁ ପଢ଼ାନ୍ତି, ଶିଖାନ୍ତି, ବୁଝାନ୍ତି, ସାହସ ଦିଅନ୍ତି । ଛୋଟ ଛୋଟ ମାଇନର ସ୍କୁଲ ପିଲାଙ୍କୁ ଥରେ କହିଲେ—ଅନ୍ତତଃ ତିନୋଟି କଥା ଶିଖିବ ଜୀବନରେ—ପହଁରି ଶିଖିବ, ବକ୍ତୃତା ଦେଇ ଶିଖିବ, ସାଇକେଲ ଚଢ଼ି ଶିଖିବ ।

ଓଡ଼ିଶାର ବିଶିଷ୍ଟ କବି ଓ ଶିକ୍ଷାବିତ୍ ଡକ୍ଟର ମାୟାଧର ମାନସିଂହ ଲେଖିଛନ୍ତି—''ସାହୁଜୀ (ଲକ୍ଷ୍ମୀନାରାୟଣ) ଥିଲେ ଆମ ପାଖରେ ପ୍ରଥମ ଓଡ଼ିଆ ଯେ ସମଗ୍ର ଭାରତ ବୁଲିଥିଲେ ଓ ଭାରତୀୟ ଜନତାକୁ ନିଜର ଲୋକ ପରି ଭାବୁଥିଲେ । ପୁଣି ସେହି ସାହୁ ମଧ୍ୟ ଥିଲେ ଉଗ୍ର ଓଡିଆ । ଓଡ଼ିଶାର ସଂସ୍କୃତିର ଏପରି କୌଣସି ଅଂଶ ନଥିଲା ଯେଉଁଥିରେ ସାହୁଜୀ ଆଗ୍ରହୀ ନଥିଲେ । ସାହୁଜୀ ପ୍ରାକୃତିକ ଓଡ଼ିଶାକୁ ମଧ୍ୟ ଉତ୍ତମ ରୂପେ ଜାଣିଥିଲେ । କିନ୍ତୁ ଆମ (ରେଭେନ୍‌ସା କଲେଜର ଛାତ୍ରମାନଙ୍କ) ନିକଟରେ ସାହୁଜୀଙ୍କର ସଂସ୍ପର୍ଶ ମୂଲ୍ୟବାନ୍ ଥିଲା ଏହି କାରଣରୁ ସେ ଆମର ସେ କାଳର ଛାତ୍ର-ସମାଜ ନିକଟରେ ଏକମାତ୍ର ଲୋକ ଯେ କି ତିଳକ, ଗୋଖ୍‌ଲେ, ମୋତିଲାଲ୍, ଲାଜପତ୍‌ଙ୍କର ବ୍ୟକ୍ତିଗତ ଅଭିଜ୍ଞତା ଆମ ଆଗରେ କହି ଆମକୁ ମନ୍ତ୍ରମୁଗ୍ଧ କରି ରଖି ପାରୁଥିଲେ କେବଳ ନୁହେଁ, ତା ସାଥେ ସାଥେ ସେତେବେଳେ ଅବାଞ୍ଛନୀୟ ବୋଧ ହେଲେହେଁ ଅତ୍ୟନ୍ତ ଉଚିତ ଓ କଲ୍ୟାଣଜନକ କୌତୂହଳ ଦେଖାଉଥିଲେ, ଆମ ଭିତରୁ କିଏ ଇଂରେଜି ବା ସଂସ୍କୃତ ଭଲ ଲେଖିପାରୁଛି ବା କହି ପାରୁଛି ତାହା ବରାବର ଖୋଜ୍ ନେବାରେ ।

ସାହୁଜୀ ସ୍କୁଲମାଷ୍ଟର ହୋଇ ଜୀବନ ଆରମ୍ଭ କରିଥିଲେ । ଆମ ଜାଣିଲା ବେଳକୁ ସେ ସମଗ୍ର ଓଡ଼ିଶାର ଛାତ୍ରସମାଜର ଅନଗରୀ ଉପଦେଷ୍ଟା । ସାହୁଜୀ ହଷ୍ଟେଲରେ କୌଣସି ରୁମ୍‌ରେ ପଶିଗଲେ ହୋଇ ଉଠିଲା ଏକ ଶ୍ଳୋକାନ୍ତ ପ୍ରତିଯୋଗିତା ବା ଇଂରେଜି ଡ଼ିବେଟ୍ ବା କବିତା କମ୍ପିଟେସନ୍ । ଓଡ଼ିଶାର କୌଣସି ହେଲେ ନେତା ଛାତ୍ରସମାଜକୁ ଏପରି ଚିହ୍ନିନାହାନ୍ତି, ଯେପରି ଚିହ୍ନିଥିଲେ ବା ଦେଇପାରିଥିଲେ ଲକ୍ଷ୍ମୀନାରାୟଣ ସାହୁ । ଓଡ଼ିଶାର ଗ୍ରାମାଞ୍ଚଳର ଶତ ଶତ ଛାତ୍ରଙ୍କୁ ସାହୁଜୀ ବ୍ୟକ୍ତିଗତ ଭାବରେ ଜାଣିଥିଲେ ଓ ବହୁଙ୍କୁ ସେ ନିଜ ନିଜ ଜୀବନ ଗଢ଼ିବାରେ ସାହାଯ୍ୟ କରିଯାଇଛନ୍ତି ।''

ସେଇ ଉତ୍କଳର ମାୟାଧର ମାନସିଂହ—ପରେ ଏତେବଡ଼ କବି, ସାହିତ୍ୟିକ, ସମାଲୋଚକ, ଶିକ୍ଷାବିତ୍ ହେଲେ , ପଦେକଥାରେ ଓଡ଼ିଶାର ଏକ ଗର୍ବ, ଗୌରବ ହେଲେ—କିନ୍ତୁ ତାଙ୍କ ପ୍ରଥମ ଜୀବନରେ କି ଦୁଃସ୍ଥ ଅବସ୍ଥାରେ ଥିଲେ, ତାଙ୍କ ହୃଦୟର କି ମହନୀୟତା, କି ବିଶାଳତା, ସେ ତା' ଅକୁଣ୍ଠ ଚିତ୍ତରେ ପ୍ରକାଶ କରିଛନ୍ତି—

"(ରେଭେନ୍‌ସାରେ) ନାମ ଲେଖା ହେବା ପାଇଁ ଯେତିକି ଅର୍ଥ ଦରକାର, ସେତିକି ବି ପକେଟ୍‌ରେ ନାହିଁ । କ'ଣ କରେ ? ଆସି ପୁଣି କ'ଣ ଗାଁକୁ ଫେରିଯିବି ?

ସେତେବେଳେ ସମଗ୍ର କଟକ ନଗରରେ ଜଣେମାତ୍ର ଲୋକକୁ ମୁଁ ଜାଣିଥାଏ । ତାଙ୍କ ନାମ ଲକ୍ଷ୍ମୀନାରାୟଣ ସାହୁ—ଉତ୍କଳର ଛାତ୍ର ସମାଜର ସେତେବେଳର ପରମତମ ମିତ୍ର ଓ ସହାୟକ ।

ଶେଷ ଚେଷ୍ଟା ଭାବରେ ଦିନେ ବାଟ ପଚାରି ପଚାରି ରେଭେନ୍‌ସାରୁ ଗଳିଗଳି ଉଦ୍‌ଗା ପଡ଼ିଆରେ ପହଂଚିଲି । ସାହୁଜୀ ଥିଲେ । ମତେ ଦେଖି ଓ ବୃତ୍ତି ପାଇବା ଜାଣି (ସେ ଆଗରୁ ଜାଣି ମନେ ରଖିଥିଲେ) ଭାରି ଖୁସି ହେଲେ । ମନେ ହେଉଛି ଜଳଖିଆ ପ୍ରଭୃତି ବି ଦେଲେ । ତା'ପରେ ତାଙ୍କ ଘରୁ ବାହାରି ଟାଉନ୍ ଆଡ଼କୁ ଆସିଲୁ । କିନ୍ତୁ ଯେଉଁଥିପାଇଁ ଏତେ ବାଟ ଯାଇଥିଲି, ତାହା ଆଉ ମୁହଁ ଫିଟାଇ କହିପାରୁ ନଥାଏ ।

ସାହୁଜୀ ମୋ କାନ୍ଧରେ ହାତ ପକାଇ ଗପ କରିକରି ଚାଲିଥାନ୍ତି । ଆମେ ଆସି ସେଲ୍‌ଟର ସ୍କୁଲ ପାଖରେ ହେଲୁ ବେଳକୁ ସେ ନିଜେ କଥା ପ୍ରସଙ୍ଗରେ ପଚାରିଲେ—ନାଁ ଲେଖାଇଲଣି ନା ?

ମୁଁ ଥିରି କହିଲି—ନା ।

ସେ କହିଲେ—କାହିଁକି ? ଟଙ୍କା ନାହିଁ ?

ମୁଁ ପୁଣି ଥିରି କହିଲି—ନାହିଁ ।

ସେ ବିସ୍ମିତ ହୋଇ କହିଲେ—ଓଃ, ସେଇଥିପାଇଁ ଆସିଥିଲ ? ମତେ ଏଯାଏ ନ କହିଛ କାହିଁକି ? ଆସ ତା'ହେଲେ ଘରକୁ ଫେରିଯିବା । ମୁଁ ତମକୁ ଟଙ୍କା ଦେଇ ଦେଉଛି ।

ପୁଣି ସାହୁଙ୍କ ଘରକୁ ଫେରିଲୁ । ଆଜି ହୁଏତ କେହି ବିଶ୍ୱାସ କରି ପାରିବେ ନାହିଁ ଯେ, ସେଦିନ ସାହୁଙ୍କଠାରୁ ସେଇ ପଚିଶଟି ମୁଦ୍ରାର ସାହାଯ୍ୟ ନ ପାଇଥିଲେ ହୁଏତ ଏଣେକର ଉଚ୍ଚଶିକ୍ଷାର ପ୍ରାରବ୍ଧମାତ୍ର ଅଧ୍ୟାୟଟି ସେଇଠିହିଁ ଶେଷ ହୋଇଥାନ୍ତା ।

ବୃତ୍ତି ପାଇଲା ପରେ ସାହୁଜୀଙ୍କୁ ତାଙ୍କ ଟଙ୍କା ଫେରାଇଦେଲି । କିନ୍ତୁ ସେଦିନ ତାଙ୍କର ସାହାଯ୍ୟର ମୂଲ୍ୟ ତ ପଚିଶ ଟଙ୍କା ମାତ୍ର ନୁହେଁ, ତା'ର ମୂଲ୍ୟ ମୋର ସାରା ଜୀବନବ୍ୟାପୀ ତାଙ୍କ ନିକଟରେ କୃତଜ୍ଞତା ।"

(ଚିରଯୌବନ ଚିରବସନ୍ତ—ପୃ ୫୨-୫୩)

କେବଳ ଡକ୍ଟର ମାନସିଂହ ନୁହନ୍ତି, ଏଭଳି ବହୁ ଛାତ୍ରଙ୍କ ପ୍ରତି ଲକ୍ଷ୍ମୀନାରାୟଣଙ୍କ ସ୍ନେହଶୀଳ ହାତ ଲମ୍ବି ଯାଉଥିଲା ଆପଦରେ, ବିପଦରେ, ଦୁର୍ଦ୍ଦିନତମ ଦିବସରେ । ସୁନ୍ଦରଗଡ଼ର ଅଧିବାସୀ, ଏକ୍‌ସାଇଜ୍ ସୁପରିନ୍‌ଟେଣ୍ଡେଣ୍ଟ ଶ୍ରୀ ବଂଶୀଧର ବକ୍‌ସି (ଆହା ! ସେ ବିଚରା ଆଜି ସ୍ୱର୍ଗରେ !) ଲକ୍ଷ୍ମୀନାରାୟଣ ସାହୁ ସ୍ମୃତିରକ୍ଷା ସମିତିର ସଭାପତି ଡକ୍ଟର ହରେକୃଷ୍ଣ ମହତାବଙ୍କ ପାଖକୁ ଶହେ ଟଙ୍କା ମନିଅର୍ଡର ପଠାଇ ଚିଠି ଖଣ୍ଡିଏ ଲେଖିଥିଲେ—"ଅନ୍ଧାରି ମୁଲକ ଗାଙ୍ଗପୁର ଷ୍ଟେଟ୍‌ର ଛୋଟ ପିଲାଟିଏ ମୁଁ । ଭାରି ଗରିବ । କଷ୍ଟେମଷ୍ଟେ କିଛି ଟଙ୍କା ଯୋଗାଡ଼ କରି କଟକ ଯାଉଥାଏ ରେଭେନ୍‌ସାରେ ନାଁ ଲେଖାଇବାକୁ । ସମ୍ବଲପୁର-ମେରାମଣ୍ଡଳି ବସ୍‌ରେ ଲକ୍ଷ୍ମୀନାରାୟଣ ସାହୁଙ୍କ ସାଙ୍ଗେ ଦେଖା ।

ଆପଣାଆଡୁ ପରିଚୟ ଦେଇ ମୋ କଥା ଶୁଣି ଦୁଃଖରେ ବିଗଳିତ ହୋଇ-ପଡ଼ିଲେ । ଆଖିରେ ଦରଦର ଅଶ୍ରୁ । ମତେ କୁଣ୍ଢେଇ ଧରି ଦଶଟଙ୍କିଆ ନୋଟ ଖଣ୍ଡେ ମୋ ପକେଟରେ ଗୁଞ୍ଜି ଦେଲେ । ସେଇ ଟଙ୍କା ମତେ ଆଜି ମଣିଷ ହେଇ ଠିଆ ହେବାର ବଳ ଦେଇଛି ।"

ବାଲେଶ୍ୱର ଅଧିବାସୀ ବିଶିଷ୍ଟ ସାହିତ୍ୟିକ, ଭାରତୀୟ ରେଳବାଇର ଜଣେ ବଡ ଅଫିସର ଶ୍ରୀ ହରିଶ ଚନ୍ଦ୍ର ବଡ଼ାଲ ତ ସେଇ କଥାହିଁ କହିଛନ୍ତି– "ତାଙ୍କ ସାହାଯ୍ୟ ବିନା ମୁଁ ମୋଟେ କଲେଜକୁ ଆସି ପାରିନଥାନ୍ତି ।" ବାଲେଶ୍ୱର ଜିଲ୍ଲା ସ୍କୁଲରେ ପଢ଼ିବା ବେଳେ ତାଙ୍କ ଅବସ୍ଥା ଅତି ଶୋଚନୀୟ ଥିଲା । ସେ ଓଳିଏ ଖାଇ ଓଳିଏ ଉପାସ ରହୁଥିଲେ । ତାଙ୍କ ବିଧବା ମା' ଅତି ନିରାଶ୍ରୟା । ସେ ଆଉ ବେଶୀ କ'ଣ କରିପାରନ୍ତେ ? ସେଇ ହରିଶ୍ ଚନ୍ଦ୍ର ମ୍ୟାଟ୍ରିକୁଲେସନରେ ସ୍କଲରସିପ୍ ପାଇଲେ । କିନ୍ତୁ ପରୀକ୍ଷା ଦେଇସାରି ଓ କଲେଜରେ ନାମ ଲେଖାଇବା ପର୍ଯ୍ୟନ୍ତ ସମୟଟା ତାଙ୍କର ମହାଦୁଃଖରେ କଟିଲା । ଲକ୍ଷ୍ମୀନାରାୟଣ ତାଙ୍କୁ ସାଙ୍ଗରେ ଧରି ବାଲେଶ୍ୱରର ବହୁ ଧନୀ, ଜମିଦାରଙ୍କ ଦ୍ୱାରସ୍ଥ ହେଲେ, ସାହାଯ୍ୟ ଭିକ୍ଷା କଲେ । କିନ୍ତୁ ବେଶୀ କିଛି କରିପାରିଲେ ନାହିଁ । ଶେଷରେ ତାଙ୍କୁ କଟକ ଆଣିଲେ । ନିଜ ଘରେ ରଖି ତାଙ୍କ ନିରାଶ ମନରେ ଆଶାର ସଞ୍ଚାର କଲେ, କଲେଜରେ ନାମ ଲେଖେଇ ଦେଲେ ।

ଦଶପଲ୍ଲାର ମହାନ୍ ବିପ୍ଳବୀ, ସ୍ୱାଧୀନତା ସଂଗ୍ରାମୀ ଶ୍ରୀ ଗୋବିନ୍ଦ ମିଶ୍ର ଅତି ଶ୍ରଦ୍ଧା ଓ କୃତଜ୍ଞତାର ସହ ଲକ୍ଷ୍ମୀନାରାୟଣଙ୍କ କଥା ସ୍ମରଣ କରନ୍ତି । ତାଙ୍କ ବିପ୍ଳବାତ୍ମକ କାର୍ଯ୍ୟ ଯୋଗୁଁ ତାଙ୍କୁ ଜୀବନ୍ତ ବା ମୃତ ଧରି ଆଣିବା ନିମନ୍ତେ ଦଶପଲ୍ଲା ରାଜା ଦୁଇହଜାର ଟଙ୍କା ପୁରସ୍କାର ଘୋଷଣା କରିଥାନ୍ତି । ଲକ୍ଷ୍ମୀନାରାୟଣ ସାହୁ ଗାନ୍ଧିଜୀଙ୍କୁ ଗୋବିନ୍ଦ ମିଶ୍ରଙ୍କ ପରିଚୟ ଦେଇ ଖଣ୍ଡିଏ ଚିଠି ଲେଖି ନଥିଲେ ଗୋବିନ୍ଦ ମିଶ୍ର ହୁଏତ ଧରାପଡ଼ି ରାଜାଙ୍କ ହାତରେ ଫାଶୀ ପାଇଥାଆନ୍ତେ–ସାବରମତୀ ଆଶ୍ରମ ଯାଇଁ ଗାନ୍ଧିଜୀଙ୍କ ପ୍ରିୟପାତ୍ର, ଶେଷରେ ପ୍ରିୟ ପୁତ୍ର ହେଇ ନଥାନ୍ତେ । ଗୋବିନ୍ଦ ମିଶ୍ର ନିଜେ ସେ କଥା ତାଙ୍କ ଆତ୍ମ-ଜୀବନୀ "ଜାତୀୟ ଜୀବନର ଆତ୍ମବିକାଶ"ରେ ପରିଷ୍କାର ଲେଖିଛନ୍ତି ।

ଆଉ ଜଣେ ଶ୍ରୀ ଗୋବିନ୍ଦ ତ୍ରିପାଠୀ ଭଲ ଛାତ୍ର ଥିଲେ, କିନ୍ତୁ ଗରିବ ଛାତ୍ର ଥିଲେ । ସେ ବି.ଏ. ପାଶ୍ କରିସାରି ଏମ୍.ଏ. ପଢ଼ିବାକୁ ସାହସ କଲେ ନାହିଁ ଉଚ୍ଛଟ ଦାରିଦ୍ର୍ୟ ଯୋଗୁଁ । ସେଇ ସମୟରେ ଲକ୍ଷ୍ମୀନାରାୟଣ କୋରାପୁଟ୍ ଜିଲ୍ଲାର ଜୟପୁରରେ ଥାଆନ୍ତି । ଦେଶମିଶ୍ରଣ କାମରେ ଖୁବ୍ ବ୍ୟସ୍ତ । ଗୋବିନ୍ଦର ଚିଠି ପାଇଲେ—ଆଉ ସେ ପଢ଼ିବ ନାହିଁ । ବି.ଏ. ପରେ ପଢ଼ା ଇତି ହେଲା ତା'ର । ଲକ୍ଷ୍ମୀନାରାୟଣ ଚିଠି ପଢ଼ି ମର୍ମାହତ ହେଲେ । ସଙ୍ଗେ ସଙ୍ଗେ ତାକୁ ଟେଲିଗ୍ରାମ୍ କଲେ—

"For God's sake pray get yourself admitted. I am coming." (ଈଶ୍ୱରଙ୍କ ଦୁହାଇ ଦେଇ କହୁଛି ଶୀଘ୍ର ନାଁ ଲେଖାଇ ଦିଅ । ମୁଁ ଆସୁଛି ।)

କିଛି ଟଙ୍କା ମଧ୍ୟ ନାଁ ଲେଖେଇବା ପାଇଁ ମନିଅର୍ଡର କରି ପଠାଇ-ଦେଲେ । ଗୋବିନ୍ଦ ସାହସ ପାଇ ନାଁ ଲେଖେଇଲେ ଓ ଏମ୍.ଏ. ପାଶ୍ କରି ପରେ ଓଡ଼ିଶା ସରକାରରେ ଜଣେ ବଡ଼ ଅଫିସର୍ ହେଲେ । ଖାଲି ସେତିକି ନୁହେଁ, ଏଇ ଗୋବିନ୍ଦ ତ୍ରିପାଠୀ ଶେଷରେ ଜଣେ ଲବ୍ଧପ୍ରତିଷ୍ଠ ସାହିତ୍ୟିକ ଓ ପ୍ରାବନ୍ଧିକ ହେଇ ବାହାରିଲେ ଓଡ଼ିଆ ସାହିତ୍ୟରେ ।

ସେହିପରି ଶ୍ରୀ ଚଣ୍ଡେଶ୍ୱର ମିଶ୍ର ବାଙ୍କି ସ୍କୁଲରୁ ମାଟ୍ରିକୁଲେସନ ପରୀକ୍ଷା ଦେଇଥାନ୍ତି । ଲକ୍ଷ୍ମୀନାରାୟଣ ବାଙ୍କି ଯାଇଥିଲେ । ସେଠାରେ ଜଣେ କହିଲେ—ଚଣ୍ଡେଶ୍ୱରଟି ଭଲ ପିଲା । ଆଉ ବେଶୀ କିପରି ପଢ଼ନ୍ତା ? ଲକ୍ଷ୍ମୀନାରାୟଣ କହିଲେ—ବେଶୀ ପଢ଼ିବାର ଇଚ୍ଛା ଥିଲେ ପଢ଼ିବ । ଅସୁବିଧା କ'ଣ ? ଅସଲ-ହେଉଛି ମନ—ମନର ଦୃଢ଼ତା । ଲକ୍ଷ୍ମୀନାରାୟଣ ତାଙ୍କ ସାଙ୍ଗରେ ଚଣ୍ଡେଶ୍ୱରଙ୍କୁ କଟକ ନେଇଆସିଲେ ଏବଂ ନିଜ ଘରେ ଦେଉଳସାହିରେ ରଖିଲେ । ସେଠାରୁ ରେଭେନ୍ସା କଲେଜ ଘୁରି ମାଇଲ । ବଡ଼ କଷ୍ଟରେ କଲେଜକୁ ଯିବା ଆସିବା କଲେ ଚଣ୍ଡେଶ୍ୱର । ପରେ ଲକ୍ଷ୍ମୀନାରାୟଣ ଚେଷ୍ଟାକରି ତାଙ୍କୁ ହଷ୍ଟେଲରେ ରଖାଇ-ଦେଲେ । ସେହି ଚଣ୍ଡେଶ୍ୱର ପାଶ୍‌କରି ପର ଜୀବନରେ ବଡ଼ ଅଫିସର ହେଲେ ।

୧୯୩୯ ମସିହାରେ ହଠାତ୍ 'ନବଜୀବନ' ସମ୍ପାଦକ ଶ୍ରୀ ଚିନ୍ତାମଣି ମିଶ୍ରଙ୍କ ଗାଁ ପୋଡ଼ିଗଲା । ଖବରକାଗଜରୁ ଏ ସମ୍ବାଦ ଦେଖି ଲକ୍ଷ୍ମୀନାରାୟଣ ଯାଇଁ

ସେଠି ସଙ୍ଗେସଙ୍ଗେ ହାଜର । ସେତେବେଳକୁ ସବୁଠାରୁ ବେଶୀ କ୍ଷତିଗ୍ରସ୍ତ ହୋଇଥିବା ୫୦ଟି ପରିବାରକୁ ଟ ୫ଙ୍କା ଲେଖାଏ, ସାହାଯ୍ୟ ଦେବାକୁ ଅପେକ୍ଷାକୃତ ସ୍ୱଚ୍ଛଳ ଲୋକେ ଯୋଜନା କରୁଥାନ୍ତି । ଲକ୍ଷ୍ମୀନାରାୟଣ ବାବୁ ଆବୁଡ଼ାପଡ଼ି କହିଲେ—"ପ୍ରଥମ ଦଶଗୋଟି ପରିବାର ମୋର" । ସେଇଦିନ ସେ ନିଜ ହାତରୁ ଟଙ୍କାଦେଇ ଘରପୋଡ଼ି ବିପନ୍ନ ଲୋକଙ୍କ ପାଇଁ ବାଉଁଶ କିଣି-ଆଣିଲେ । ୩୦ ଜଣ ତନ୍ତୀଙ୍କର ତନ୍ତସବୁ ପୋଡ଼ିଯାଇଥିବାରୁ ଚଉଦ୍ୱାରରେ ଅଚଳହୋଇ ପଡ଼ିଥିବା ତାଙ୍କ ଗ୍ରାମ ସଂଗଠନ କେନ୍ଦ୍ରର ତନ୍ତଶାଳସବୁ ବିପନ୍ନ ଲୋକଙ୍କୁ ସଙ୍ଗେସଙ୍ଗେ ଯୋଗାଇ ଦେଲେ ।

କିନ୍ତୁ ଏହି ଜଣେଜଣଙ୍କୁ ଉଠେଇବା ବା ସାହାଯ୍ୟଦେବା କିଛି ବଡ଼କଥା ନୁହେଁ, ସମଗ୍ର ଓଡ଼ିଆଜାତିକୁ ଉଠେଇବା, ଓଡ଼ିଆ ପ୍ରାଣରେ ଶକ୍ତି, ସାହସ, ପ୍ରେରଣା, ଉଦ୍ଦୀପନା ଭରିଦେବା, ଓଡ଼ିଆ ମନରେ ଗଭୀର ଆତ୍ମବିଶ୍ୱାସ ଆଣି-ଦେବା, ଦୃଢ଼ତା ଆଣିଦେବା, "ମୁଁ ଓଡ଼ିଆ" "କଳିଙ୍ଗ କୁମାରୀ" ଆଦି ଲେଖି ଓଡ଼ିଆଜାତିର ଗୌରବୋଜ୍ଜ୍ୱଳ ଐତିହ ବଖାଣିବା, ଉତ୍କଳ ସମ୍ମିଳନୀର ସଭାପତି ଥାଇ ଓଡ଼ିଆଙ୍କ ପାଇଁ ଆପ୍ରାଣ ସଂଗ୍ରାମ କରିବା, ଓଡ଼ିଶା ଦେଶ-ମିଶ୍ରଣ ଆନ୍ଦୋଳନରେ ପୂର୍ଣ୍ଣପ୍ରାଣରେ ଝାସଦେବା, ପ୍ରତି ଓଡ଼ିଆଙ୍କୁ ନିଦ୍ରାକରିବା, ଟାଣ କରିବା, ଡାଗଡ଼ା କରିବା, ସାହସୀ କରିବା, ବୀର୍ଯ୍ୟବାନ୍ କରିବା ପାଇଁ ସକ୍ରେଟିସ୍‌ଙ୍କ ଭଳି ଘରେଘରେ ବୁଲି ଓଡ଼ିଆ ଯୁବକଯୁବତୀଙ୍କ କାନରେ, ବାଳକବାଳିକାଙ୍କ କାନରେ, ନେତା, କର୍ମୀଙ୍କ କାନରେ ମନ୍ତ୍ର ଫୁଙ୍କିବାରେ ଲକ୍ଷ୍ମୀନାରାୟଣ ଥିଲେ ଧୁରନ୍ଧର—ଏକ ଉତ୍ସର୍ଗୀକୃତ ଜୀବନ । ସେଇଥିପାଇଁ ଓଡ଼ିଶାର ଅନ୍ୟତମ ତୁଙ୍ଗ ନେତା, ଚିରବିପ୍ଲବୀ, ଚିରତରୁଣ ଶ୍ରୀ ସୁରେନ୍ଦ୍ର ନାଥ ଦ୍ୱିବେଦୀ କହନ୍ତି—

"ଓଡ଼ିଆ ଜାତି ଆଜି ବି ନିଜର ପୂର୍ଣ୍ଣ ଆତ୍ମମର୍ଯ୍ୟାଦା ଫେରି ପାଇ ନାହିଁ । ଓଡ଼ିଆ ଲୋକଙ୍କ ପ୍ରାଣରେ ଏବେ ସୁଦ୍ଧା ଦୁର୍ଗମ ଗିରି ଲଂଘି ଆରପଟକୁ ଅତିକ୍ରମ କଲାଭଳି ଶକ୍ତିର ସଞ୍ଚାର ହୋଇନାହିଁ । ମନ ଭିତରେ କେଉଁ ନିଭୃତ କୋଣରେ ଅବଚେତନ ଭାବରେ ରହିଯାଇଛି ନିଜକୁ ନ୍ୟୂନ, କ୍ଷୁଦ୍ର ଓ ଅବହେଳିତ ହୋଇ ରହିଥିବାର ପରମ୍ପରାଗତ ଧାରଣା । ଏହାକୁ ଭାଙ୍ଗି ଏକ

ଦୁର୍ଦ୍ଦାନ୍ତ, ସାହସୀ, ବୀର ଜାତି ଭାବରେ ଛିଡ଼ା କରାଇବା ଥିଲା ଲକ୍ଷ୍ମୀନାରାୟଣ-ବାବୁଙ୍କ କାର୍ଯ୍ୟ । ସେଥିଲାଗି ସେ ତାଙ୍କ କାର୍ଯ୍ୟକୁ ସମସ୍ୟାବହୁଳ ଓଡ଼ିଶାର କୌଣସି ଏକ ସମସ୍ୟାରେ ସୀମାବଦ୍ଧ ରଖି ନଥିଲେ । ସାମାଜିକ, ଅର୍ଥନୀତିକ ଓ ରାଜନୀତିକ ସବୁ କ୍ଷେତ୍ରରେ ତାଙ୍କର ଉଦ୍ୟମ ଅପ୍ରତିହତ ଥିଲା ଏବଂ କେତେକ କାର୍ଯ୍ୟରେ ସେ ଥିଲେ ଅଗ୍ରଦୂତ । ତାଙ୍କ ପୂର୍ବରୁ କୌଣସି ଓଡ଼ିଆ ପୁଅ ସେମିତି କାର୍ଯ୍ୟରେ ହାତ ଦେଇ ନଥିଲା ଏବଂ କାର୍ଯ୍ୟଟିକୁ ସେଭଳି ରୂପ ଦେବାକୁ ଚେଷ୍ଟା କରି ନଥିଲା । ଏହା ଥିଲା ତାଙ୍କର ନିଜସ୍ୱ ନିଜର ପ୍ରଚେଷ୍ଟା । X X X ଆଜି ଜଣେ ଯଦି କେହି ଗତ ପଚାଶ ବର୍ଷର ଓଡ଼ିଶାର ସାମାଜିକ ଓ ରାଜ-ନୀତିକ ଜୀବନର ଇତିହାସ ଗବେଷଣା କରିବ କିମ୍ବା ରଚନା କରିବାକୁ ଉଦ୍ୟମ କରିବ, ସେ ଅନ୍ୟ କାହାରିକି ବାଦ୍ ଦେଇପାରେ, ମାତ୍ର ଲକ୍ଷ୍ମୀନାରାୟଣ ବାବୁଙ୍କର ଅବଦାନକୁ ସ୍ୱୀକାର ନକଲେ ତାଙ୍କର ଇତିହାସ ପଢ଼ା ଓ ଲେଖା ରହିଯିବ ଅପୂର୍ଣ୍ଣ ।”

(ଚିରଯୌବନ ଚିରବସନ୍ତ—ପୃ ୨୨)

ଲକ୍ଷ୍ମୀନାରାୟଣ କିପରି ଓଡ଼ିଆ-ପ୍ରାଣ ଥିଲେ, ତା’ ତାଙ୍କ ନିଜ ଲେଖାରୁ ବେଶ୍ ସୁସ୍ପଷ୍ଟ । ଓଡ଼ିଶା ପାଇଁ, ଓଡିଆଙ୍କ ପାଇଁ କି ଗଭୀର ମମତା—

“ଏହି ଦେଶର ମାଟିରେ ମୁହିଁ ମରିଯିବି ଯେବେ
ଏହି ଦେଶର ମାଟିରେ ମୁହିଁ ରହିବି ଗଛ ହୋଇ ।
ଏହି ଦେଶର ଜଳ ଏହି ଦେଶର ବାୟୁ
ଏହି ଦେଶର ଜନ ଏହି ଦେଶର ହେଉ ।
ଆତ୍ମଘାତୀ ବିଶ୍ୱାସଘାତୀ ଏ ଦେଶରେ ନରହୁ ।
ଏହି ଦେଶର ମାଟିରେ ମୋର ଦେହର ମାଟି ମିଶୁ ’
ଏହି ଦେଶର ଓଡ଼ିଶାର ଓଡ଼ିଆପୁଅ ପୁଅ ସଙ୍ଗେ ସେ ରସୁ ।
ଏହି ଦେଶର ଫଳ ଫୁଲ ମୋହର ଲାଗୁ ଭଲ ।
ଏହି ଦେଶର ଗିରି ବନାନୀ, ଦିଶୁ ମୋ ଆଖିରେ ଭୁବନମୋହିନୀ ।
ଏହି ଦେଶର ଏହି ଦେଶର ଓଡ଼ିଆପୁଅ ମୁହିଁ
ସାଗର ପାରି ଏକଲା ଭଲ ବୋଇତ ନେବି ବାହି ।

ଏହି ଦେଶର ଶିଳ୍ପ ସାହିତ୍ୟ
କରିବି ମୁହିଁ ମୋର ଆଯତ୍ତ ।
ଜଗତେ ଯହିଁ ଯିବି ଦେଖାଇବି ତହିଁ
ଦେଖ ଏ ଦେଶର ଗାରିମା ଗରିମା ସତ ।"

—ଲକ୍ଷ୍ମୀନାରାୟଣ
(ମଧୁରେଖା—ପୃ୭୧-୭୨)

## ଲକ୍ଷ୍ମୀନାରାୟଣଙ୍କ ସମାଜ ଚିନ୍ତା, ଓଡିଆ ଯୁବକଙ୍କୁ ଆହ୍ୱାନ

('ସହକାର'ରେ ଶ୍ରୀ ଲକ୍ଷ୍ମୀନାରାୟଣ ସାହୁଙ୍କର ଲିଖିତ ଏକ ସଂପାଦକୀୟ
...ସହକାର—ପ୍ରଥମ ବର୍ଷ ୧୯୨୦-୨୧ ମସିହା, ଜ୍ୟେଷ୍ଠ ୧୩୨୮,
୨ୟ ସଂଖ୍ୟା, ପୃଷ୍ଠା ୧୮)

"ବର୍ତ୍ତମାନ ଆମ୍ଭର ପ୍ରୟୋଜନ କ'ଣ ? ବିଜ୍ଞାନଯୁତ କୃଷି, ଖଣି ଆଦି କାର୍ଯ୍ୟର ପ୍ରସଙ୍ଗ ନିଜ ମଧ୍ୟରେ ସହକାରିତା । ଏ ସବୁ ଯେତେଦିନ ପର୍ଯ୍ୟନ୍ତ ହୋଇପାରି ନାହିଁ, ସେତେଦିନ ପର୍ଯ୍ୟନ୍ତ ଇଂରେଜଙ୍କୁ ଗାଳିଦେବା ଫଳ ନାହିଁ । ଜାପାନ ଆସିଲେ ମଧ୍ୟ ଲୁଟିବ, ଆମେରିକା ଆସିଲେ ମଧ୍ୟ ଲୁଟିବ । ଆତ୍ମ-ରକ୍ଷା ପାଇଁ ଏବଂ ନିଜ ନିଜର ସୁଖସୌଖ୍ୟ ବୃଦ୍ଧି ପାଇଁ କିଏ ବ୍ୟସ୍ତ ନୁହେଁ ? ଆମ୍ଭେମାନେ ଯୋଗ ନିଦ୍ରାରେ ପଡ଼ିଥିଲୁ । ଆମ୍ଭମାନଙ୍କର ସମାଜ ପଦ୍ଧତି ଆମ୍ଭମାନଙ୍କର ଗତିବିଧିକୁ ଯେପରି ଭବରେ ନିୟନ୍ତ୍ରିତ, ସ୍ତବ୍ଧ କରି ରଖିଥିଲା, ସେଥିରେ ଆମ୍ଭେମାନେ ଆଜି ପୃଥିବୀର ନୂତନ ଜୀବନ ସଂଗ୍ରାମରେ ପଡ଼ି ନିଜକୁ ରକ୍ଷାକରି ପାରିନାହୁଁ, ଏହାହିଁ ସତ୍ୟ କଥା । କୃଷି ବାଣିଜ୍ୟର କିପରି ଉନ୍ନତି ହେବ, ଦେଶର ଶିଳ୍ପ କିପରି ଅଧିକ ଅଧିକ ଚଳିବ, ଏହି ଦିଗରେ ମନ ଫେରାଇବାକୁ ହେବ । ଏପରି କିଛି ସମୟ ଗଲେ ଭରତର ବର୍ତ୍ତମାନ ଶୋଚନୀୟ ଦୁରବସ୍ଥା ଦୂରୀଭୂତ ହେବ । ବୃଥା ହାୟ ହାୟ କଲେ କିଛି ହେବନାହିଁ । ଯୁବକବୃନ୍ଦ ! ଉଠିବସ; ଉଠ, କାର୍ଯ୍ୟରେ ଲାଗିଯାଅ । ବୃଥା ଭବନାରେ କିଛି ଫଳ ନାହିଁ ।"

## ଅସ୍ପୃଶ୍ୟତା ଦୂରୀକରଣ ପାଇଁ ସମାଜସେବୀ ଲକ୍ଷ୍ମୀନାରାୟଣଙ୍କ ଆହ୍ୱାନ

('ସହକାର'ରେ ଲକ୍ଷ୍ମୀନାରାୟଣଙ୍କ ସଂପାଦକୀୟ–
ସହକାର ପ୍ରଥମ ବର୍ଷ–୧୩୨୯–ପୃ.୧୫–୧୯୨୧-୨୨ ମସିହା)

''ଯେଉଁମାନେ ମହାତ୍ମାଗାନ୍ଧୀଙ୍କ ସହିତ ଏକମତ ଯେ ଅସ୍ପୃଶ୍ୟତା ହିନ୍ଦୁଜାତିର ମହାକଳଙ୍କ ଏବଂ ଯେଉଁମାନେ ଏହି ଅସ୍ପୃଶ୍ୟତା ନମାନି ଚଳିବାକୁ ଦୃଢସଂକଳ୍ପ ସେମାନେ ମହାତ୍ମାଗାନ୍ଧୀଙ୍କୁ ତାଙ୍କର ଏହି କାର୍ଯ୍ୟରେ ସାହାଯ୍ୟ କରନ୍ତୁ । ଆମ୍ଭେମାନେ 'ସହକାର'ରେ ସେମାନଙ୍କ ନାମ ପ୍ରକାଶ କରିବାକୁ ପ୍ରସ୍ତୁତ ଅଛୁ । ଯେଉଁମାନେ ସମାଜରୁ ଏହି ଅସ୍ପୃଶ୍ୟତା ଦୋଷ ଦୂର କରିବା ପାଇଁ ପ୍ରସ୍ତୁତ, ଯେଉଁମାନେ ଏହି ଦିଗରେ କାର୍ଯ୍ୟ କରିବେ, ସେମାନେ ଜାତିଚ୍ୟୁତ ହୋଇପାରନ୍ତି, ସାମାଜିକ ନାନା କଷ୍ଟରେ ପଡ଼ି ପାରନ୍ତି, କିନ୍ତୁ ଏହି କଷ୍ଟ ସହନ ବ୍ୟତୀତ ସମାଜରୁ ଅସ୍ପୃଶ୍ୟତା ଦୂର କରିବାର ଆଉ ସହଜ ଉପାୟ ବର୍ତ୍ତମାନ ନାହିଁ । ଆମ୍ଭେମାନେ ଆଶାକରୁ ଖାଣ୍ଟି ସତ୍-ପ୍ରକୃତିକ ଯୁବକମାନେ ଆମ୍ଭମାନଙ୍କୁ ଏହି ଦିଗରେ ପ୍ରଚୁର ସାହାଯ୍ୟ ପ୍ରଦାନ କରିପାରିବେ ।''

□□□

## ॥ ଛଅ ॥

## ଲକ୍ଷ୍ମୀନାରାୟଣଙ୍କ ଜୀବନ ଦର୍ଶନ

ଥରେ ସାହିତ୍ୟିକ ଶ୍ରୀ ସୁରେନ୍ଦ୍ର ମହାନ୍ତି 'ଜନତା' ସମ୍ପାଦକ ଥିଲାବେଳେ ଓଡ଼ିଶାର ବହୁବିଶିଷ୍ଟ ବ୍ୟକ୍ତିଙ୍କୁ ନିଜ ସମ୍ବନ୍ଧରେ ନିଜ ମୃତ୍ୟୁର ଶୋକଲିପି (Obitary)ଲେଖିବା ପାଇଁ ଅନୁରୋଧ କରିଥିଲେ । କେହିତ ଉତ୍ତର ଦେଲେନାହିଁ । ଅନେକେ ଏହା ଏକ ବିକୃତ ଚିନ୍ତାର ଉଦ୍‌ଭଟତା ବୋଲି ଗାଳିଦେଇ ପତ୍ର ଲେଖିଲେ । ଅନେକେ ସ୍ୱଭାବସୁଲଭ ରୀତିରେ ଜବାବ ସୁଦ୍ଧା ଦେଲେ ନାହିଁ ।

କେବଳ ଲକ୍ଷ୍ମୀନାରାୟଣ ସାହୁ ସୁରେନ୍ଦ୍ର ବାବୁଙ୍କୁ ଦିନେ ରାସ୍ତାରେ ଦେଖି, ଅଟକାଇ, ନିଜ ସାଇକେଲ୍ ସିଟ୍ ଉପରେ ନିଜର ଶୋକଲିପି ଲେଖି ତାଙ୍କ ହାତକୁ ବଢ଼େଇ ଦେଲେ । କହିଲେ—"ସୁରେନ୍ଦ୍ର, ହଠାତ୍ ମନେପଡ଼ିଲା ଏଇ ସପ୍ତାହରେ ତୁମକୁ ମୋର ନିଜର ଶୋକଲିପି ଦେବା କଥା, ଡ଼େରି-ହୋଇଗଲାଣି । ତେଣୁ ଏଇ ରାସ୍ତାରେ ଲେଖିଦେଲି । ନେଇଯାଅ," ସୁରେନ୍ଦ୍ରବାବୁ ଲେଖାଟି ଧରି ଫେରିଲେ ।

କିଛିଦିନ ବିତିଗଲା । ଦିନେ ଭୟଙ୍କର ମେଘ ଅନ୍ଧାରଗତି । ମୂଷଳ-ଧାରରେ ବର୍ଷା ଛେଚୁଛି । ସେଥିରେ ତିନ୍ତିବୁଡ଼ି ଲକ୍ଷ୍ମୀନାରାୟଣ ଆସି ପହଞ୍ଚିଲେ ସୁରେନ୍ଦ୍ରବାବୁଙ୍କ ଘରେ । ଆଉଖଣ୍ଡେ କାଗଜ ବଢ଼ାଇଦେଇ କହିଲେ—"ସୁରେନ୍ଦ୍ର, ମୋ ଲେଖାରେ ଗୋଟିଏ ଭୁଲ୍ ରହିଯାଇଛି, ମୁଁ ସେଥିରେ ଲେଖିଛି, ଆଇସ୍-ବର୍ଗର ୧୧ଭାଗରୁ ମାତ୍ର ୧୦ଭାଗ ପାଣିଭିତରେ ବୁଡିଥାଏ ଓ ଉପରକୁ ମୋଟେ ଗୋଟିଏ ଭାଗ ଦେଖା ଯାଉଥାଏ । କିନ୍ତୁ ତାହା ୮ ଭାଗରୁ ଭାଗେ ହେବ । ସଂଶୋଧନ କରିଦେବ" । ଏତିକି କହି ସେ ଝଡ ବେଗରେ ବାହାରି ଗଲେ । ଘ କପେ ପାଇଁ ଅପେକ୍ଷା କଲେନାହିଁ ।

ଯେଉଁ ପ୍ରସଙ୍ଗରେ ସେ ଏହା କହିଲେ, ତା' ହେଉଛି ସେ ଆଗ ଲେଖାରେ ଲେଖିଥିଲେ—"ଲକ୍ଷ୍ମୀନାରାୟଣ ସାହୁଙ୍କର ପରଲୋକ ଘଟିଲା । ସେ ଆଇସ୍‌ବର୍ଗ ପରି ମଣିଷଟିଏ ଥିଲେ । ତାଙ୍କର ୧୧ ଭାଗରୁ ୧୦ଭାଗ ପାଣି ଭିତରେ ବୁଡ଼ି ରହିଥିଲା । ଯାହା ଉପରକୁ ଦିଶୁଥିଲା, ତାହା ଗୋଟିଏ ଭାଗ ମାତ୍ର ।"

ଏଇ ଲକ୍ଷ୍ମୀନାରାୟଣ ସାହୁ । ଏମିତି ସାଧା ସିଧା ସଫା, ସରଳ, ସତେଜ । ଭିତରେ ଯାହା ବାହାରେ ସେଇଆ । ଟିକିଏ ବି ଲୁଚେଇବାର ନାହିଁ । ସେ ଅନେକ ସମୟରେ ଇଂଲଣ୍ଡର ରାଜା ପ୍ରଥମ ଚାର୍ଲସ୍‌କୁ ମାରି ସିଂହାସନରେ ବସିଥିବା Cromwell, the Protector (ରକ୍ଷାକର୍ତ୍ତା କ୍ରମ୍‌ୱେଲ୍)ଙ୍କ କଥା କହନ୍ତି । କ୍ରମ୍‌ୱେଲଙ୍କୁ ସେତେବେଳର ଜଣେ ଚିତ୍ରଶିଳ୍ପୀ ତାଙ୍କର ଗୋଟିଏ ତୈଳଚିତ୍ର ଆଙ୍କିବା ପାଇଁ ଅନୁମତି ମାଗିଲେ । କ୍ରମ୍‌ୱେଲ୍ ସମ୍ମତ ହେଲେ । ଆଠଦିନ ପରେ ଶିଳ୍ପୀ ତୈଳଚିତ୍ରଟି ଆଣି କ୍ରମ୍‌ୱେଲ୍‌କୁ ଉପହାର ଦେଲେ । କିନ୍ତୁ ଆଶ୍ଚର୍ଯ୍ୟ ! କ୍ରମ୍‌ୱେଲ୍ ଦେଖିଲା-ମାତ୍ରେ ତାହା ଫିଙ୍ଗିଦେଲେ । କାରଣ କ୍ରମ୍‌ୱେଲ୍‌ଙ୍କ ବାଁଗାଲ ହନୁହାଡ଼ରେ ଗୋଟିଏ ଉତୁଡ଼ି ଥିଲା । ମୁହଁକୁ ଅସୁନ୍ଦର ଦିଶୁଥିଲା । ମୁହଁକୁ ଅଧିକ କମନୀୟ, ଲୋଭନୀୟ କରିବା ପାଇଁ ଶିଳ୍ପୀ ତୂଳୀମୁନରେ ଟିକିଏ ରଙ୍ଗ ମାରି ସେଇଟି ଉଠେଇ ଦେଇଥିଲେ । ଆଉ ତା ଦେଖି କ୍ରମ୍‌ୱେଲ୍ ଖପ୍ପା । ତୈଳଚିତ୍ରଟି ଫିଙ୍ଗିଦେଇ ଚିତ୍କାର କଲେ—

' Paint me as I am, don't paint me as I ought to have been"

(ମୁଁ ଠିକ୍ ଯେମିତି, ସେମିତି ଚିତ୍ରକର । ମୁଁ ଯାହାହେବା ଉଚିତ୍ ବା ଯାହାହେଲେ ସୁନ୍ଦର ଦିଶିବି, ସେମିତି କରନାହିଁ । )

ଲକ୍ଷ୍ମୀନାରାୟଣ ସାହୁ ଠିକ୍ ସେଇଆ । ଟିକିଏ ବି ରଙ୍ଗ ବୋଳି, ବାହାରେ ଚିକଣଚାକଣ କରି ସେ ଦେଖେଇବାକୁ ଚାହାଁନ୍ତି ନାହିଁ । ସେ କହନ୍ତି—ଫଟୋଟିଏ ଉଠାଅ, ପେଣ୍ଟିଂ କର ନାହିଁ । ପେଣ୍ଟିଂମାନେ କୃତ୍ରିମତା, ଛଳନା, ପ୍ରତାରଣା, ଅଭିନୟ—ଯାହା ନୁହେଁ, ଜବରଦସ୍ତି ସେଇଆ ଦେଖେଇବାର ଇଚ୍ଛା; ତା ହେଲେ ସତ୍ୟର ପ୍ରକାଶ ହେବ କେମିତି ?

ଏବେ ଦେଖାଯାଉ ଆମେ ତ ତାଙ୍କ ବିଷୟରେ ଅନେକ କଥା କହୁଛେ, ସେ ନିଜ ନିଜ ବିଷୟରେ କ'ଣ କହିଛନ୍ତି ।

ଜୀବନର ସାୟାହ୍ନରେ ସେ "ମୁଁ ଓ ଜୀବନ" ଶୀର୍ଷକ ଗୋଟିଏ ଲେଖା ପଠାଇଥିଲେ କବି, କୁଳବୃଦ୍ଧ ଶ୍ରୀ ବାଳକୃଷ୍ଣ ପଟ୍ଟନାୟକଙ୍କ ପାଖକୁ । ସେଥିରେ ସେ ନିଜ ହାତରେ ଲେଖିଥିଲେ—

"୧୮୯୦ ଖ୍ରୀଷ୍ଟାବ୍ଦ ଅକ୍ଟୋବର ୩ ତାରିଖରେ ମୋର ଜନ୍ମ । ବାଲେଶ୍ୱର ସହରରେ ମୁଁ ଜନ୍ମିଥିଲି । ମୋର ପିତା ✓ କ୍ଷେତ୍ରମୋହନ ସାହୁ ଧନୀର ସନ୍ତାନ ଥିଲେ । କିନ୍ତୁ ପିତାଙ୍କ ମୃତ୍ୟୁ ସଙ୍ଗେସଙ୍ଗେ ସେ ଗରିବ ହୋଇ ପଡ଼ିଲେ । ଦିନକୁ ଦିନ ସ୍ୱରଣା, ଛଅଣା ରୋଜଗାର କରି ପୁଣି ଜୀବନ ଚଳାଇଲେ । ମାଣିକ୍ୟଖମ୍ବରେ ଆମର କୋଠାଘର ନିଲମ ହୋଇଗଲା । ବାରବାଟିରେ ଆସି ବାପା କୁଡ଼ିଆ ବାନ୍ଧିଲେ ।

ସୁତରାଂ ମୁଁ ପିଲାଟି ଦିନରୁ ଏଣ୍ଟ୍ରାନ୍ସ ପାଶ କରିବା ପର୍ଯ୍ୟନ୍ତ (୧୯୦୮ ଖ୍ରୀଷ୍ଟାବ୍ଦ) ଗରିବ ଭାବରେ ଜୀବନଯାପନ କଲି । ଏଣ୍ଟ୍ରାନ୍ସ ପର୍ଯ୍ୟନ୍ତ ମୋର ଦେହରେ କମିଜ୍ ନଥିଲା କି ମୋର ଗୋଡ଼ରେ ଯୋତା ନଥିଲା ।

କିନ୍ତୁ ପିଲାଟି ଦିନରୁ ମୁଁ ଉଚ୍ଚତର ଜୀବନଯାପନ କରିବା ପାଇଁ ଆଗ୍ରହାନ୍ୱିତ ଥିଲି । ଶଙ୍କରାଚାର୍ଯ୍ୟଙ୍କର "ମୋହମୁଦ୍‌ଗର" ମୋତେ ବଡ଼ ମୁଗ୍ଧ କରିଥିଲା । ମୁଁ ପିଲାଟି ଦିନରୁ କାହାରି ଘରେ ଖାଉ ନଥିଲି । ଆଉ ଗଣେଶ ପୂଜା, କାର୍ତ୍ତିକ ପୂଜା, ଦୁର୍ଗା ପୂଜା, ସରସ୍ୱତୀ ପୂଜା ଇତ୍ୟାଦିରେ ଖୁବ ମନ ଦେଉଥିଲି ।

ଫଳତଃ ବୈବାହିକ ଜୀବନ ପାଇଁ ମୋର ଗୋଟିଏ ବିତୃଷ୍ଣା ଥିଲା । ମୁଁ ସେଥିପାଇଁ ୧୯୦୮ ଖ୍ରୀଷ୍ଟାବ୍ଦରେ ପ୍ରଥମ ପୁନର୍ବିବାହ ସମୟରେ ମଙ୍ଗଳଘଟ ଗୋଡ଼ରେ ଫୋପାଡ଼ି ଦେଇଥିଲି ।

କଟକକୁ ଆସି ପ୍ରଥମେ 'କୋରନ କ୍ଲବ' ସ୍ଥାପନ କଲି । ବ୍ରାହ୍ମସମାଜର ଛାତ୍ର ସମାଜରେ ଗୋଟିଏ ବଡ଼ପଣ୍ଡା ଥିଲି । ଖୁବ୍ ପ୍ରବନ୍ଧାଦି ପାଠ କରେ । ତା'ପରେ କଟକ ମିଶନ ସ୍କୁଲରେ ମାଷ୍ଟର ଥିଲାବେଳେ Y.M.C.A.ର ସେକ୍ରେଟେରୀ ମଧ୍ୟ ଥିଲି । ପର ଜୀବନରେ ଆର୍ଯ୍ୟସମାଜୀଙ୍କ ସହ ହବନ କରିଛି ।

୧୯୦୮ ସାଲରେ ମୋର ଜୀବନରେ ଗୋଟିଏ ଘୋର ପରିବର୍ତ୍ତନ ଘଟିଥିଲା । ସମସ୍ତଙ୍କୁ ଆପଣାର କରିବାର ଆଗ୍ରହ ହେଲା । ତେଣୁ ହାଡ଼ି, ପାଣ, ମୁସଲମାନ, ଖ୍ରୀଷ୍ଟିୟାନ, ବ୍ରାହ୍ମଣ, କରଣ, ଓଡ଼ିଆ, ବଙ୍ଗାଳି ସମସ୍ତଙ୍କୁ ସମାନ ଚକ୍ଷୁରେ ଦେଖିବାକୁ ଲାଗିଲି ।

୧୯୦୫ ଖ୍ରୀଷ୍ଟାବ୍ଦରେ ସ୍ୱଦେଶୀ ଆନ୍ଦୋଳନରେ ଭାଗ ନେଇ ଦେଶ ଚିହ୍ନିବାକୁ ଲାଗିଲି । କିନ୍ତୁ ବୃହତ୍ତର ଦେଶ ସମଗ୍ର ପୃଥିବୀ—ଆଉ ତା'ଠାରୁ ବୃହତ୍ତର ତାହାର ରାଜ୍ୟ । ସୁତରାଂ ମୋର ମନ କ୍ଷୁଦ୍ର ସଂସାର ମଧ୍ୟରେ ଆବଦ୍ଧ ନ ରହି ବିଶାଳ ବିଶ୍ୱ ଭିତରେ ଘୂରିବାକୁ ଲାଗିଲା । ମୁଁ ଅନୁଭବ କରେ, ମୁଁ ବିନ୍ଦୁଟିଏ ଏହି ମହାସିନ୍ଧୁ ଭିତରେ—ଆଉ ସେହି ବିଶାଳ ଶକ୍ତିଦ୍ୱାରା ମୁଁ ଚାଳିତ । ଆଉ ସମସ୍ତେ ମୋର ଭାଇ । ଏହି ଉପଲବ୍ଧି ମୋତେ ଆନନ୍ଦ ଦିଏ, ଏହାରି ଫଳରେ ମୁଁ କେବେହେଲେ କ୍ଷୁଦ୍ର ସ୍ୱାର୍ଥଦ୍ୱାରା ମୁଗ୍ଧ ବା ଚାଳିତ ହୋଇନାହିଁ । ଆଉ ଅନୁଭବ କରିଛି ଯେ ପବିତ୍ର ଜୀବନ ପ୍ରକୃତ ସୁଖ ଦିଏ ।

ନିଃବେଦିତ ଜୀବନହିଁ ପ୍ରକୃତ ଜୀବନ । ଆଉ ସବୁ ଜୀବନ ଗଡ୍ଡ଼ାଳିକା ପ୍ରବାହ ପରି । ଯେଉଁ ଜୀବନରେ ଅନୁଭବ ବ୍ୟାପ୍ତି, ସୌନ୍ଦର୍ଯ୍ୟ, ସହୃଦୟତା, ସହାନୁଭୂତି, ସେହି ଜୀବନହିଁ କଳ୍ପଲତା, କାକର କାକଳୀ । ପ୍ରତି ପ୍ରତ୍ୟୁଷରେ ଏହି କଥାହିଁ କହିଯାଏ—ଉଠ, ଜାଗ୍ରତ ହୁଅ, ଧର୍ମପଥରେ ବିଚରଣ କର । ଏହି ଅନୁଭବ ହିଁ ମୋର ଜୀବନର ଅନୁଭବ ।

ପାଠ ପଢ଼ିବା, ସଦ୍‌ଗ୍ରନ୍ଥ ପାଠକରି ନିଜକୁ ମହତ୍, ସୁନ୍ଦର କରିବା, ନିଜେ ସ୍ରଷ୍ଟା ହେବାର ଚେଷ୍ଟା କରିବା, ସୌନ୍ଦର୍ଯ୍ୟ ପାଇଁ ମୋର ଯେପରି ଆହୁରି ଅନେକଙ୍କର ଚିର ଆକାଙ୍‌କ୍ଷା । ସେହି ପଥରେ ଚାଳିତ ହୋଇ ମୁଁ ସାହିତ୍ୟପାଠ କରିଛି ଏବଂ ସାହିତ୍ୟ ରଚନା କରିବାକୁ ଚେଷ୍ଟା କରିଛି ।

ମାରକସ୍ ଅରେଲିପସ ଆଣ୍ଟୋନିୟସ, (ଇଂରାଜି) ଏଡ଼ୱଇନ୍ ଆରନଲ୍‌ଡ୍‌ଙ୍କ 'Light of Asia' ଟେମ୍‌ସ ଏ କାମ୍ପିସ୍‌ଙ୍କ 'Initiation of Christ', ଗୀତା, ବାଇବେଲ ଏହି ସବୁ ମୋତେ ଆନନ୍ଦ ଦେଇଛି । ସାହିତ୍ୟରେ ଟଲଷ୍ଟୟଙ୍କ ବହିସବୁ, ଭିକ୍ଟର ହିଉଗୋଙ୍କ 'Le Miserables' ରସ୍କିନ୍, ଇମରସନ୍ ମୋତେ ଉପରକୁ ଟାଣିଛି ।

ପଦ୍ୟରେ ବାଇରନ୍, ସେଲି, ଓ୍ୱାଲ୍ଟ ହ୍ୱିଟମାନ ମୋତେ ପାଗଳ, ମୁଗ୍ଧ କରିଛି, ଆକର୍ଷଣ କରିଛି; ଉପଦେଶରେ ରାମକୃଷ୍ଣ କଥାମୃତ । ଅତଏବ ଏହି ସବୁ ମୁଁ ପଢିବାକୁ କହିବି, କେବଳ ପଦ୍ୟଟାକୁ ବାଦ ଦେଇ । ସେଟା ମୋର ବ୍ୟକ୍ତିଗତ ।

ନାରୀ ଜାତିକୁ ଆମେ ଯେପରି ରଖିଛୁ ତାହା ଶୋଭନୀୟ ନୁହେଁ । ସେମାନଙ୍କୁ ଆହୁରି ଜ୍ଞାନର ଆଲୋକ ଦେବା ଦରକାର । ଆଜି ଆମର ନାରୀ ଜାତି ଓଡ଼ିଶାରେ ଅନ୍ତତଃ ଏକାବେଳକେ ଦାନା ଘରରେ ପଡ଼ି ରହିଛନ୍ତି ।

ସମାଜ ବ୍ୟବସ୍ଥାରେ ଯେଉଁଥିରେ କେତେଗୁଡ଼ିଏ ଲୋକ କ୍ରୀତଦାସ ଭଳି ଅନ୍ୟ ପାଇଁ ଖଟିବେ, ତାହା ମୁଁ ସହ୍ୟ କରିପାରେନାହିଁ । ଅତଏବ ବଡ଼ ବଡ଼ କାରଖାନା ପ୍ରଭୃତିରୁ ମୋ ମନ ପଳାଇ ଆସେ ।

ଆଉ ନିଶା, ବେଶ୍ୟା, ଏହା ଅତ୍ୟନ୍ତ କଦର୍ଯ୍ୟ । ଏହା ଆମକୁ ଆଲୋକ ଦେଖାଏ ନାହିଁ । ଏହା ଅନ୍ଧାରକୁ ଆମକୁ ଘେନିଯାଏ ।

ପାଠପଢ଼ା ଜ୍ଞାନାର୍ଜନ, କିନ୍ତୁ ସଙ୍ଗେ ସଙ୍ଗେ ସଂଯତ ସୁଶୋଭନ ଜୀବନ ଲୋଡ଼ା । ଏହାହିଁ ମୋର ଅନୁଭବ ।

ମୋର ଜୀବନର ଅଭିଜ୍ଞତାରେ ଦେଖିଲି ଯେ କେତେଗୁଡ଼ିଏ ଲୋକ ଆଦୌ ପରିବର୍ତ୍ତିତ ହୁଅନ୍ତି ନାହିଁ । ଏମ୍ ଏ. ବି.ଏଲ୍, ଉଚ୍ଚଶିକ୍ଷିତ—ତଥାପି ସେମାନଙ୍କର ଧପାବାଜି, କଥାର ଠିକ ନାହିଁ ଇତ୍ୟାଦି ।

ଏସବୁ ଲୋକଙ୍କ ସହିତରେ କାରବାରରେ ସାବଧାନ ହେବାକୁ ହେବ ସିନା—ଆଉ କିଛି କରି ହେବ ନାହିଁ । ସେମାନେ ସେହି ବିରାଟର ଗୋଟିଏ ଅଂଶ । ଅତଏବ ତାଙ୍କୁ ଅନାବୃତ କରିବା ମଧ୍ୟ ଠିକ୍ ନୁହେଁ ।

ମୁଁ ଅନେକ ରାଗିଛି—ରାଗିବାଟା ଅନ୍ୟାୟ ବୋଲି ବର୍ତ୍ତମାନ ବୁଝିବା ଭାବି ପାରିନାହିଁ । କିନ୍ତୁ ରାଗି ଯେ ବିଶେଷ କିଛି କୌଣସି କଥାର ପରିବର୍ତ୍ତନ କରି ପାରିଛି, ତାହା ମଧ୍ୟ ନୁହେଁ । ଲାଭ କିଛି ହୋଇ ନାହିଁ—ବରଂ ମୋର ନିଜର ଲୋକସାନ୍ ହୋଇଛି । ଅତଏବ ରାଗିବାଟା ଯେ ସବୁ ସମୟରେ ଅନ୍ୟାୟ ତାହା ଉପଲବ୍‌ଧି କରୁଛି । କିନ୍ତୁ ନ ରାଗି ମଧ୍ୟ କାମ ହାସଲ କରିବାକୁ ହେବ ନିଜର ଦୃଢ଼ତା ଦ୍ୱାରା । ଏହି ଚେଷ୍ଟା ହିଁ କରିବାକୁ ହେବ ।

ପତିତ ଆତ୍ମସଂଯମ ପ୍ରତି ଲକ୍ଷ୍ୟ ରଖିବାକୁ ହେବ । କିନ୍ତୁ କେତେକ ଲୋକଙ୍କର ସ୍ୱଭାବ କାର୍ଯ୍ୟକାରଣ ସମ୍ପର୍କରେ ହଠାତ୍ ରାଗିଯିବା, ମୁଁ ତାଙ୍କ ମଧ୍ୟରୁ ଜଣେ । କିନ୍ତୁ ମୁଁ ଏହା ପସନ୍ଦ କରେ ନାହିଁ । ତେବେ ଏତିକି ଭଲ ଯେ ମୁଁ କାହାରି ପ୍ରତିଶୋଧ ନେବା ପାଇଁ ଭବିଷ୍ୟତକୁ ଚାହିଁ କରି ନଥାଏ ।

ସାରକଥା ମୁଁ ଉପଲବ୍ଧି କରିଛି ଏତିକି ଯେ ମହାଶକ୍ତି ଗୋଟିଏ ଖେଳୁଛି ବିଶ୍ୱରେ କାର୍ଯ୍ୟ କରୁଛି । ସେହି ମହାଶକ୍ତି ସହିତରେ ମୁଁ ଆପଣାକୁ ମିଶାଇବି, ତାଙ୍କ ସହିତରେ ଯୁକ୍ତ ହେବି–ତାଙ୍କର ସତ୍ତାକୁ ସତତ ଅନୁଭବ କରି ନିଜର ଗତିବିଧି ଠିକ୍ କରିବି । ଏହି ଚେଷ୍ଟା ମୁଁ କରେ–କିନ୍ତୁ ତାହା ସବୁ ବେଳେ ସ୍ଥାୟୀ ହେଲେ ମଙ୍ଗଳ ହୁଅନ୍ତା । ତାହା ପାରେ ନାହିଁ–ପାରିନାହିଁ ।

"ତାହାରି ଭଙ୍ଗିତେ ଚାଲଇ ମୁହିଁ
ତାହାରି ସଙ୍ଗୀତେ ମୁଗ୍ଧ ମୁହିଁ
ସେ ନାହିଁ ଆଜି ସେ ନାହିଁ
ଶୂନ୍ୟ ଲାଗେ ସବୁ ଶୂନ୍ୟ ଲାଗେ ତହିଁ ।
ସେହି ମୋର ହେଉ ଜଗଜ୍ଜୟୀ
ସେହି ମୋର ହେଉ ବଡ଼ ସ୍ନେହୀ
ସେହି ମୋର ପରାଣ ମନ ନେଉ
ସେହି ମୋର ସେହି ମୋର ଚିର ରହୁ ।"

□□□

॥ ସାତ ॥

## ସାହସ ଓ ନିର୍ଭୀକତା

ଜୀବନର ସାୟାହ୍ନରେ ସିନା ଏମିତି କହିଲେ, ଜୀବନର କଅଁଳ ଗାଧୁଆ ବେଳେ–ଚିକ୍‌ଚିକ୍ ଖରାରେ–କଅଁଳା ବାଛୁରି ଭଳି ଫକ୍‌ଫକ୍ ଡେଇଁ ଡେଇଁ କ'ଣ କରୁଥିଲେ ଲକ୍ଷ୍ମୀନାରାୟଣ ? କ'ଣ କରୁଥିଲେ ଉଦ୍ଦାମ ଯୌବନରେ ଯେତେବେଳେ ସେକ୍‌ସପିୟରଙ୍କ ଭାଷାରେ ମଣିଷ ଜଳନ୍ତା କମାଣ ଆଗକୁ ଡେଇଁ ପଡ଼େ ତୁଚ୍ଛ ପାଣିଫୋଟକା ଯଶ ପାଇଁ ?

"Seeking the bubble reputation
Even in the Cannon's mouth".
(As you Like It)

କ'ଣ କରୁଥିଲେ ପ୍ରୌଢ଼ତ୍ୱରେ ଯେତେବେଳେ ଛାଇ ଲେଉଟିଲା । ତେଜ ମଉଳିଲା ?

ଜାତୀୟ କବି ବୀରକିଶୋର ତାଙ୍କ "ସବୁଜ ସାଥୀ" କବିତା ପୁସ୍ତକରେ ଲେଖିଛନ୍ତି–

"ଏଡ଼େ ଅମାନିଆ ଷେଣ୍ଢକିଲା ଟୋକା
ଶୁଖି ହେଇଯିବୁ ପଅତପତ,
ଦେହରେ ମୁଣ୍ଡରେ ପାଇଲେ ଜାଣିବୁ
ବୁଢ଼ୀ ଯାହା କହୁଥିଲା ତା' ସତ ।"

ଏହା ସେ ଲେଖିଛନ୍ତି, ତାଙ୍କ ପିଲାଦିନେ ଛୁଆଁ ଅଛୁଆଁ ନ ବାରି ସେ ଗୋଟିଏ ହରିଜନ ପିଲା ସାଙ୍ଗରେ ଖୁବ୍ ମିଶୁଥିବାରୁ ଏକାଠି ଖାଉଥିବାରୁ,

ବନ୍ଧୁଥିବାରୁ ତାଙ୍କ ରକ୍ଷଣଶୀଳା ବୁଢ଼ୀମା' ତାଙ୍କୁ କେମିତି ତାଗିଦ୍ କରୁଥିଲେ, ସେଇ କଥା ବର୍ଣ୍ଣନା କରି ।

ଲକ୍ଷ୍ମୀନାରାୟଣ ପିଲଦିନେ ଥିଲେ ଏକ ଏମିତିକା ଗୋଟିଏ ଅମାନିଆ ଷେଣ୍ଢକିଳା ଟୋକା, ଯିଏ ଗଲିଗଲି ଶଗଡ଼ରେ ହାତ ମାରୁଥିଲା, ପଣ୍ଡିତଙ୍କ ଗୋଡକୁ ପଥର ଫିଙ୍ଗୁଥିଲା, ଯିଏ ମନିରୁଦ୍ଦିନ ମାଷ୍ଟରଙ୍କୁ ଚରିତ୍ର ଦୋଷପାଇଁ ମାରିବାକୁ ବସିଥିଲା, ଯିଏ ହାତରେ ଶାଙ୍କୁଚ ଲଙ୍ଗୁଡ଼ ଧରି ଦଳେ ପିଲଙ୍କୁ ନେଇ ଘରିଗରି ବୁଲୁଥିଲା ଆଉ ଦଳେ ପିଲଙ୍କୁ ଆକ୍ରମଣ କରିବା ପାଇଁ । ଯିଏ ଇଂରେଜି ସାହେବଙ୍କୁ ଥଟ୍ଟା କରିକରି ଛିଗୁଲେଇ ଛିଗୁଲେଇ ଗାଉଥିଲା—

'ସାହିବ ସାହିବ ପାକଲ ପାନ ଖାଇବ
ଘୁଅ ବାଡ଼ିକି ଧାଇଁବ'

ଏଇ ଟୋକା ଗଳା ବଅସର ଲକ୍ଷ୍ମୀନାରାୟଣ !!

ଲକ୍ଷ୍ମୀନାରାୟଣ ଥିଲେ ଗୋଟିଏ ବେଗବାନ ଅଶ୍ୱ, ଗୋଟିଏ ଭୟଙ୍କର ବୈଶାଖୀ ଝଡ଼, ଗୋଟିଏ ଚିର ଅଶାନ୍ତ, ଚିର ଅତୃପ୍ତ ଆତ୍ମା, ଯିଏ ସବୁବେଳେ ଖାଲି ଧାଉଁଥିଲେ, ଧାଉଁଥିଲେ । ରକ୍ଷଣଶୀଳତା ବିରୁଦ୍ଧରେ, ଅନ୍ୟାୟ ଅତ୍ୟାଚାର ବିରୁଦ୍ଧରେ, ଅଜ୍ଞାନ, ଅଶିକ୍ଷା, କୁଶିକ୍ଷା ବିରୁଦ୍ଧରେ ବା ଧନୀର ଲାଞ୍ଛନା, ପ୍ରବଞ୍ଚନା ବିରୁଦ୍ଧରେ ବା ସମାଜର ନାନା ଜାଲ୍ ଜୁଆଚୋରି, ଧାପ୍ପାବାଜି ବିରୁଦ୍ଧରେ ଲଢ଼େଇ କରି କରି ଚାଲୁଥିଲେ ତାଙ୍କ ଜୀଅାଁବାକରୁ ପାକଲ ବାଳ ଯାଏ । ସେ ଥିଲେ ଚିର ବିପ୍ଳବୀ, ଚିର ବିଦ୍ରୋହୀ । ଡକ୍ଟର ହରେକୃଷ୍ଣ ମହତାବ ତାଙ୍କୁ ଠିକ୍ ଚିହ୍ନିଥିଲେ । ସେ କହୁଥିଲେ—"ବିଂଶ ଶତାବ୍ଦୀର ଆରମ୍ଭରୁ ଓଡ଼ିଶାରେ ଯେଉଁ କେତୋଟି ପ୍ରତିଭା ଓଡ଼ିଆର ଭାବଧାରାକୁ ପ୍ରଭାବିତ କରି ଓଡ଼ିଆ ସମାଜକୁ ଉନ୍ନତି ମାର୍ଗରେ ଅଧିରୂଢ଼ କରାଇଛନ୍ତି, ସେମାନଙ୍କ ମଧ୍ୟରେ ସ୍ୱର୍ଗତ ଲକ୍ଷ୍ମୀନାରାୟଣ ସାହୁ ଅନ୍ୟତମ, ବାଲ୍ୟାବସ୍ଥାରୁ ଏକ ବିପ୍ଳବର ଜୀବନ-ସ୍ୱପ୍ନ ଦେଖି ଶେଷରେ ସେ ସଫଳକାମ ହୋଇଥିଲେ । ବିପ୍ଳବୀର ଜୀବନ ସର୍ବଦା ଏକାକୀ । ସେ ଆସିଥିଲେ ଏକା ଗଲେ ମଧ୍ୟ ଏକା । କିନ୍ତୁ ରଖି ଦେଇଗଲେ ଏକ ବିରାଟ କାହାଣୀ ଅଧ୍ୟବସାୟର, ସେବାପରାୟଣତାର, ସମାଜରେ ନୂତନ ଚେତନାର ଅବତାରଣାର । ତାଙ୍କ ଜୀବନୀ ହୁଏତ ଉପନ୍ୟାସ ପରି ମନେ

ହୋଇପାରେ । ବାସ୍ତବିକ ଲକ୍ଷ୍ମୀନାରାୟଣ ବାବୁଙ୍କ ଜୀବନ ଆଦର୍ଶବାଦର ଏକ ଜୀବନ୍ତ ଉପନ୍ୟାସ । ତାଙ୍କ ଆତ୍ମଜୀବନୀରେ ଜୀବନର ସଂକ୍ଷିପ୍ତ ବିବରଣୀ ମାତ୍ର ଦିଆ ହୋଇଛି । ସମୟାନୁସାରେ ହୁଏତ ତାଙ୍କ ଜୀବନର ଆହୁରି ଅନେକ ରହସ୍ୟ ଉଦ୍‌ଘାଟିତ ହେବ । ହୁଏତ ସେ ରହସ୍ୟ ଉଦ୍‌ଘାଟିତ ହେବ ଓଡ଼ିଶା ବାହାରେ ଯେଉଁଠି ସେ ନିଜର ମାନବିକତାର ସାଧନା କରି ବହୁ ସଂଖ୍ୟକ ଲୋକଙ୍କର ଆଦର ଅର୍ଜନ କରିଥିଲେ । ସେ ଭାରତ ସେବକ ସମିତିର ସଭ୍ୟ ଥିଲେ । ଭାରତ-ସେବକ ହିସାବରେ ସେ ଯଥାର୍ଥନାମା ଥିଲେ ।"

(ମୋ ବାରବୁଲା ଜୀବନ—ମୁଖବନ୍ଧ)

ତାଙ୍କ ବିପ୍ଳବୀ ଜୀବନର କଥା ଲକ୍ଷ୍ମୀନାରାୟଣ ସାହୁ ନିଜେ ବି କହନ୍ତି—"ସ୍ୱଭାବତଃ ମୁଁ ଯୋଗୀ, ଋଷି କିମ୍ବା ଲଢ଼େଇ କରିବା ସ୍ୱଭାବର । କିନ୍ତୁ ଏପରି ଅବସ୍ଥାରେ ମୁଁ ପଡ଼ିଲି ଯେଉଁଠାରେ ନୀରବ ପରିଶ୍ରମ, ଦେଶସେବା ଦରକାର । ନୀରବ ଏହି ଅର୍ଥରେ କହୁଅଛି ଯେ ଝଡଝଂଜା ଭିତରକୁ ନ ଯାଇ ସାଧାରଣ ରାଜନୀତିର କାର୍ଯ୍ୟ କରିବା ମୋ ପକ୍ଷରେ ଏକ ପ୍ରକାର ଭଲ ହୋଇଅଛି । ନୋହିଲେ ହୁଏତ ମୋର ସ୍ୱଭାବ ଯେପରି ଏତେ ଦିନେ ଫାଶି-କାଠରେ ଝୁଲିବାକୁ ହୋଇଥାନ୍ତା । କିମ୍ବା ଦେଶତ୍ୟାଗୀ ହୋଇ ସୁଦୂର ରୁଷିଆ ବା ଆମେରିକାରେ ବୁଲିବାକୁ ହୋଇଥାନ୍ତା ।" (ମୋ ବାରବୁଲା ଜୀବନ)

ଏହି କର୍ମଯୋଗୀ, ଜ୍ଞାନଯୋଗୀ, ଚିର ବିପ୍ଳବୀ, ଚିର ଅଶାନ୍ତ ଆତ୍ମା ଲକ୍ଷ୍ମୀନାରାୟଣ । ନାନା କାମରେ, ବହୁ କାମରେ ସେ ଆକଣ୍ଠ ବୁଡିଯାଇଥାନ୍ତି । ସମାଜସେବାଠାରୁ ସଂସ୍କୃତି ସେବା, ଦେଶନିର୍ମାଣଠାରୁ ସମବାୟ ଆନ୍ଦୋଳନ, ସାମ୍ବାଦିକତା, ସାହିତ୍ୟ, ସଙ୍ଗୀତ—ସବୁଥିରେ ଓତପ୍ରୋତ ଭାବେ ଜଡ଼ିତ ଲକ୍ଷ୍ମୀନାରାୟଣ ।

ଥରେ ଗାନ୍ଧିଜୀ ବର୍ଗିଚାରେ ଗୋଟିଏ ଗଛ ଲଗାଉଥିଲେ । ତାଙ୍କୁ ଜଣେ ପଚାରିଲେ—ବାପୁଜି ! ଆପଣଙ୍କୁ ଯଦି ଆଉ ମାତ୍ର ଅଧଘଣ୍ଟା ପରେ ମରିବାକୁ ପଡ଼ିବ, ଆପଣ କେଉଁ କାମଟି ଆଗ ସାରିବେ ? ଗାନ୍ଧିଜୀ ହସିହସି କହିଲେ—ଏଇ ଗଛଟିକି ଭଲ ଭାବେ ଲଗାଇବି, ମାଟି ଦେବି, ପାଣି ଦେବି, ତା'ପରେ ଶୋଇଯିବି, କିଛି ଦୁଃଖ ନାହିଁ ।

ଲକ୍ଷ୍ମୀନାରାୟଣଙ୍କର ବି ଥିଲା ଏଇ ନିର୍ଲିପ୍ତତା । ଏଇ ସନ୍ନ୍ୟାସୀ ଭାବ । ଯୋଉ କାମ କରୁଥିଲେ, ସେ ସେଇ କାମରେ ମଜ୍ଜି ଯାଉଥିଲେ, ମୁଗ୍ଧ ହୋଇ ଯାଉଥିଲେ ଗୋଟାପଣେ ଏବଂ ପ୍ରାଣମୂର୍ଚ୍ଛା ଉଦ୍ୟମ କରି ସେ କାମଟିକୁ ସାରୁଥିଲେ ସୁରୁଖୁରୁରେ । ସେପରି କାର୍ଯ୍ୟ ସେ କରିଥିଲେ ପୁରୀ ଦୁର୍ଭିକ୍ଷରେ ୧୯୧୯ରେ, ଗଞ୍ଜାମ ଓ ଉତ୍ତର ବାଲେଶ୍ୱର ଦୁର୍ଭିକ୍ଷରେ ୧୯୪୩-୪୪ରେ, ବୈତରଣୀ ବନ୍ୟାରେ ୧୯୨୭ରେ, ଉତ୍ତର ପ୍ରଦେଶ ଦୁର୍ଭିକ୍ଷରେ ୧୯୧୭-୧୮ରେ ବା ଆସାମ ଓ ପୂର୍ବବଙ୍ଗ ବନ୍ୟା ଓ ବାତ୍ୟା ରିଲିଫ୍ କାମରେ ୧୯୧୯ରେ ।

ଖାଲି ବନ୍ୟା, ବାତ୍ୟା, ମଡ଼କ, ମହାମାରୀ ନୁହେଁ, ଛୋଟ ବଡ଼ କାମ—କାଠଚିର ଠାଁ ନଡ଼ାବୁହା, ବଗିଚାକାମ ଠାଁ ତନ୍ତ ଚଲା, ବିଡ଼ାନାସୀଠାରୁ ଆସୁଥିବା ବିଡ଼ିକାଠ ଶଗଡ଼ ଉପରେ ବସି ନେଉଳସାହିରୁ ନିମିଗ୍ରେଡ଼ି ଓକିଲ ମଧୁ ମହାନ୍ତିଙ୍କ ଘରକୁ ଆସିବା, ଚଉଦ୍ୱାରଠାରୁ ଜେନାପୁର ପର୍ଯ୍ୟନ୍ତ ହାଇଲେଭଲ କେନାଲରେ ପହଁରି ପହଁରି ଭେଜି ଖାଇଯିବା ବା ବିରୂପା ଆନିକଟରେ ଅନ୍ଧ ଅନ୍ଧ ପାଣି ଓ ଶିଉଳିରେ କେଉଟମାନଙ୍କ ସଙ୍ଗେ ଦଉଡ଼ିବା—ସବୁ କାମରେ ତାଙ୍କର ଆଗ୍ରହ, ନିଷ୍ଠା, ଆନ୍ତରିକତା, ସବୁଥିରେ ଧୂରନ୍ଧର, ବୀର ପୁଅଟାଏ ।

ତାଙ୍କୁ ଏହି ବିଚିତ୍ର ବେଶରେ ଦେଖିଥିବା ଲେକଙ୍କର ଜୀବନ୍ତ କଥା ଶୁଣନ୍ତୁ—

"ନେତୃସ୍ଥାନୀୟ ବ୍ୟକ୍ତିଙ୍କ ମଧ୍ୟରେ ଲକ୍ଷ୍ମୀନାରାୟଣ ସାହୁ ଏକମାତ୍ର ଲେକ ଥିଲେ, ଯେ ଆପଣାଛାଇଁ ଅଖ୍ୟାତ କନିଷ୍ଠ ଲେକ, ବିଶେଷତଃ ସ୍କୁଲ, କଲେଜ ଛାତ୍ରଙ୍କ ସଙ୍ଗେ ଅତି ଘନିଷ୍ଠ ଭାବରେ ମିଶୁଥିଲେ ଏବଂ ସେମାନଙ୍କୁ ନେଇ ସଭାସମିତି, ଆଳାପ ଆଲୋଚନା କରୁଥିଲେ । ତାଙ୍କର ବେଶୀ ସମୟ କଟୁଥିଲା ସେମାନଙ୍କ ସଙ୍ଗେ । ଅନ୍ୟ ଏକ ବିଶିଷ୍ଟ ଗୁଣ ଥିଲା ତାଙ୍କର, ଛୋଟ ବଡ ସବୁ କାମକୁ ସମାନ ମଣିବା । କୌଣସି ଏକ ଜାତୀୟ ସମ୍ମିଳନୀ ଯେମିତି, ପରିବା ଗଛ ଲଗାଇବା ପାଇଁ କିଆରି କରି ପାଣି ମଡ଼େଇବା ସେହିପରି ଥିଲା ତାଙ୍କ ପାଖରେ । ଦିନେ ଦେଖିଥିଲି ନଡ଼ା ବୋଝେ ମୁଣ୍ଡେଇ ଯୋବରାଠାରୁ ଚାଲିଥାନ୍ତି ବିଚ୍ ରାସ୍ତା ଉପରେ । ପଚାରିଲାରୁ କହିଲେ—ନଇ ଆରପଟୁ ଗାଈଙ୍କ ପାଇଁ ଡଙ୍ଗାରେ ନଡ଼ା ଆଣିଥିଲି । ମୂଲିଆକୁ କହିଲି ଆମ

ଘରକୁ ନବା ପାଇଁ । ସେ ଯେଉଁ ମୂଲ ଗ୍ରହିଁଲ ଅତି ବେଶୀ । ବେଶୀ ଭରି ନାହିଁ । ନିଜେ ମୁଣ୍ଡାଇ ନେଇଯାଉଛି ।'' କେତେ ଜଣ ଏମ୍.ଏ ପାଶ୍ କଲବାଲ ଏପରି କରିପାରିବେ ନିର୍ବିକାରରେ ?

ଗୀତ ଗାଇବା (ତାନମାନ ହେଉ ବା ନ ହେଉ); କବିତା ଲେଖିବା (ଛନ୍ଦବିଛନ୍ଦକୁ ପରୁଆ ନାହିଁ); ଯୁକ୍ତି କରିବା (ଯେ କୌଣସି ସ୍ଥାନରେ, ଯେ କୌଣସି ବିଷୟରେ ହେଉ), ବକ୍ତୃତା ଦେବା (ସଭରେ ଦୁଇଜଣ ଥାଆନ୍ତୁ ବା ଦୁଇ ହଜାର ଥାଆନ୍ତୁ)—ଏସବୁ ପାଇଁ ସେ ଥିଲେ ଧୂରନ୍ଧର ।

ମାନ, ଅପମାନକୁ ଖାତିରି ନଥିଲ ତାଙ୍କର କେତେବେଳେ । ଯାହା ମନକୁ ପାଉଥିଲ ତାଙ୍କର ଠିକ ବୋଲି, ସେହି ବାଟରେ ସେ ଗ୍ଲୁଥିଲେ ନିର୍ଭୟରେ, ନିଶଙ୍କରେ, ଫଳାଫଳ ଯାହା ହେଉ ।''

—ଜଷ୍ଟିସ୍ ହରିହର ମହାପାତ୍ର

(ଚିରଯୌବନ ଚିରବସନ୍ତ—ପୃ ୨୫)

ଲକ୍ଷ୍ମୀନାରାୟଣ କୌଣସି କାମକୁ ସଙ୍କୋଚ ମଣୁ ନଥିଲେ । କୌଣସି ଲେକକୁ—ସେ ଭରତର ପ୍ରଧାନମନ୍ତ୍ରୀ ହୁଅନ୍ତୁ କି ଓଡ଼ିଶାର ମୁଖ୍ୟମନ୍ତ୍ରୀ ହୁଅନ୍ତୁ କି ତାଙ୍କ ହିନ୍ଦ୍ ସେବକ ସମିତି (The Servants of India Society)ର ପ୍ରେସିଡେଣ୍ଟ ହୁଅନ୍ତୁ କି କଟକ ମିଶନ ସ୍କୁଲର ହେଡ୍-ମାଷ୍ଟର ହୁଅନ୍ତୁ—କେବେ, କାହାକୁ, କୌଣସି ପରିସ୍ଥିତିରେ ଭୟ କରୁନଥିଲେ । ସତୀଚଉରାଠାରେ ତାଙ୍କ ଶବ ଦିଆ ହୋଇଥିବା ବେଳେ ଅଧ୍ୟାପକ ପଣ୍ଡିତ ବାନାମ୍ବର ଆଗ୍ରର୍ଯ୍ୟ ଏକ ସଂସ୍କୃତ ଶ୍ଳୋକ ଉଦ୍ଧାର କରି କହିଥିଲେ—ଯିଏ ଜୀବନରେ କାହାକୁ ଡରେ ନାହିଁ ଓ ଯାହାକୁ କେହି ଡରନ୍ତି ନାହିଁ, ସେ ହିଁ ପୁରୁଷୋତ୍ତମ । ସେହି ଦୃଷ୍ଟିରୁ ଲକ୍ଷ୍ମୀନାରାୟଣ ଥିଲେ ଅଜାତଶତ୍ରୁ—ପୁରୁଷୋତ୍ତମ ।

ସତରେ ଲକ୍ଷ୍ମୀନାରାୟଣ ସାହୁ ଯେମିତି ଥିଲେ ସ୍ନେହୀ, ମିଷ୍ଟାଳାପୀ, ସଦାଗ୍ରରୀ, ନୀତିବାନ୍ ସେମିତି ବେଳେବେଳେ ଥିଲେ ଅତି କଠୋର, କର୍କଶ, ଦୁର୍ଦ୍ଦାନ୍ତ, ଦଣ୍ଡାମାର୍କା । କୌଣସି ପରିସ୍ଥିତିରେ ସେ ଦବି ଯାଉନଥିଲେ । ସେ ନବାବ୍ ପୁଅକୁ ଜବାବ୍ ଦେଉଥିଲେ ଠେକ୍‌ଠୋକ୍ । ଓଡ଼ିଶା ଏସେମ୍ବଲିରେ ମୁଖ୍ୟମନ୍ତ୍ରୀ ଡକ୍ଟର ହରେକୃଷ୍ଣ ମହତାବ୍‌ଙ୍କୁ, କନ୍‌ଷ୍ଟିଚ୍ୟୁଏଣ୍ଟ ଏସେମ୍ବଲିରେ ଭରତର ପ୍ରଧାନମନ୍ତ୍ରୀ ପଣ୍ଡିତ ଜବାହାରଲଲ ନେହୁରୁଙ୍କୁ ଓ ପଗ୍ରଶ ବର୍ଷ ତଳେ

ଓଡ଼ିଶାର ପ୍ରବଳ ପରାକ୍ରମୀ ନେତା ମିଷ୍ଟର ଦାସଙ୍କୁ ସେ ମୁହେଁ ମୁହେଁ ଖୁବ୍ କଡାକଡ଼ି କଥା କହୁଥିଲେ । ସେତିକି ସତ୍ ସାହସ ଓ ନୈତିକ ବଳ ନଥିଲେ ଏଡ଼ିକି ରୋକ୍‌ଠୋକ୍ ସମାଲୋଚନା କେହି କରିପାରିବ ନାହିଁ ସେତେବେଳର ସେହି ତୁଙ୍ଗ ନେତାଙ୍କୁ ।

ଜବାହାରଲାଲ ନେହେରୁ ତାଙ୍କ କନ୍ୟାଙ୍କସହ ସରକାରୀ ଉଡ଼ାଜାହାଜରେ ଆମେରିକା ଯାଇଥିବାରୁ ସେ ପାର୍ଲିଆମେଣ୍ଟରେ ଟା'ର ତୀବ୍ର ପ୍ରତିବାଦ କରିଥିଲେ ଓ ତାଙ୍କ କନ୍ୟାଙ୍କ ଖର୍ଚ୍ଚ ଶୀଘ୍ର ସରକାରୀ ଟ୍ରେଜେରିରେ ଜମା ଦେବାକୁ ଜିଦ୍ ଧରିଥିଲେ । ସେଥିପାଇଁ ତାଙ୍କୁ ଅନେକ ହୀନ, ନୀଚ ବୋଲି କହିଲେ । କିନ୍ତୁ ସେ ଅଟଳ, ଅଚଳ, ଶେଷରେ ଜବାହରଲାଲ ତାଙ୍କ କନ୍ୟାଙ୍କ ଖର୍ଚ୍ଚ ସରକାରୀ ଟ୍ରେଜେରିରେ ଜମା ଦେବାକୁ ବାଧ୍ୟ ହେଲେ । ଏହା ଗଳ୍ପ ନୁହେଁ, ଇତିହାସ ; ପାର୍ଲିଆମେଣ୍ଟ ରେକର୍ଡରେ ଏବେ ବି ଏହା ଲିପିବଦ୍ଧ ହୋଇ ରହିଅଛି ।

"୧୯୪୯ରେ ପଣ୍ଡିତ ନେହେରୁ ଆମେରିକା ଗସ୍ତରେ ଯିବାବେଳେ ସରକାରୀ ଯାନରେ ତାଙ୍କ ପରିବାରର ଲୋକଙ୍କୁ ନେଇଥିବାରୁ ସେ (ଲକ୍ଷ୍ମୀନାରାୟଣ) ପାର୍ଲିଆମେଣ୍ଟରେ ଯେଉଁ ପ୍ରଶ୍ନ ପଚାରିଥିଲେ, ତାହା ଭାରତରେ ଚହଳ ପକାଇ ଦେଇଥିଲା । ତାଙ୍କୁ ଅନେକେ ସଂକୀର୍ଣ୍ଣମନା ବୋଲି ସମାଲୋଚନା କରିଥିଲେ ସିନା, ସେ ନେହରୁଙ୍କୁ ଚିଠି ଲେଖି ଜଣାଇ ଦେଲେ ଯେ ବ୍ୟକ୍ତିଗତ ସୁଖସ୍ୱାଚ୍ଛନ୍ଦ୍ୟ ଲାଗି ସରକାରୀ ଧନର ଅପବ୍ୟୟ ଅନୁଚିତ । ତାଙ୍କର ଏହି ଧାରଣା ଥିବାରୁ ସେ ଏଭଳି ପ୍ରଶ୍ନ ପଚାରିଥିଲେ ଏବଂ ନେହେରୁ ଯେ ତାଙ୍କ କନ୍ୟାଙ୍କ ଖର୍ଚ୍ଚ ସରକାରୀ ତହବିଲରେ ଦାଖଲ କରିଛନ୍ତି, ଏହା ପ୍ରକାଶ କରିବାକୁ ସୁବିଧା ଦେଇ ସେ ନେହେରୁଙ୍କ ପ୍ରତି ଭାରତର ସମ୍ମାନ ବଢ଼ାଇ ଦେଇଛନ୍ତି ମାତ୍ର । ଲକ୍ଷ୍ମୀନାରାୟଣ ଥିଲେ ନୀତିରେ କଠୋର । ତେଣୁ ସେ ଏଭଳି ଅସୂୟା ପ୍ରଚୋଦିତ ସମାଲୋଚନାକୁ ଭ୍ରୂକ୍ଷେପ କରି ନଥିଲେ ।"

—ପ୍ରଫେସର ଡକ୍ଟର ଶ୍ରୀରାମ ଚନ୍ଦ୍ର ଦାଶ

(ଚିରଯୌବନ, ଚିରବସନ୍ତ—ପୃ ୪୯)

ଏହି ଥିଲା ଲକ୍ଷ୍ମୀନାରାୟଣଙ୍କର ଦୁର୍ଦ୍ଦାନ୍ତ ସାହସ !



# ଆଠ

## ସାହିତ୍ୟିକ, ଗବେଷକ, କବି ଲକ୍ଷ୍ମୀନାରାୟଣ

ଭାଷା ମାଧ୍ୟମରେ ଅନ୍ତରର ସ୍ୱତଃସ୍ଫୁର୍ତ୍ତ ଅଭିବ୍ୟକ୍ତି ହିଁ ସାହିତ୍ୟ । କବିତା ହେଉ ବା ପ୍ରବନ୍ଧ ହେଉ, ଗଳ୍ପ ହେଉ ବା ଉପନ୍ୟାସ ହେଉ ତହିଁରେ ଲେଖକ ନିଜକୁ ବ୍ୟକ୍ତ କରେ ନିଜ ଆତ୍ମାର ସକଳ ଶ୍ରଦ୍ଧା ଓ ଆନ୍ତରିକତା ଦେଇ । ଭାଷାର ସୌକୁମାର୍ଯ୍ୟ ଅପେକ୍ଷା ଭାବର ଗାମ୍ଭୀର୍ଯ୍ୟ ସାହିତ୍ୟକୁ ଅଧିକ ରସାଣିତ କରେ, ରସାପ୍ଲୁତ କରେ । ଭାବ ଯେତେ ହୃଦୟସ୍ପର୍ଶୀ ହୁଏ ସାହିତ୍ୟ ସେତେ ଆଦୃତ ହୁଏ । ଲକ୍ଷ୍ମୀନାରାୟଣଙ୍କ ସମଗ୍ର ସାହିତ୍ୟ ସୃଷ୍ଟିରେ ଭାଷାର ମାଧୁର୍ଯ୍ୟଠାରୁ ଭାବର କମନୀୟତା, କୋମଳତା ଅଧିକ ଅନୁଭୂତ ହୁଏ । ଯେତେବେଳେ ଯେଉଁ ଭାବ ତାଙ୍କ ମନରେ ଉଦୟ ହୁଏ, ସେ ତାକୁ କବିତା, ଗଳ୍ପ, ପ୍ରବନ୍ଧ, ଜୀବନୀ ଆକାରରେ ଲେଖିପକାନ୍ତି । ସେଥିରେ ନଥାଏ କୌଣସି ବିଧିବଦ୍ଧ ନିୟମ ବା ଶୃଙ୍ଖଳା । ଥାଏ କେବଳ ଅନ୍ତର-ଉଚ୍ଛୁଳା ହୃଦୟସ୍ପର୍ଶୀ ଭାବ । ଅତି ସରଳ, କୋମଳ, ସହଜବୋଧ୍ୟ ଭାଷାରେ ସେ ତାକୁ ବ୍ୟକ୍ତ କରନ୍ତି । ତାହା ପାଠକର ମନକୁ ଆକର୍ଷଣ କରେ, ଅନ୍ତରକୁ ଜୟ କରେ । ସେଥିରେ ପାଣ୍ଡିତ୍ୟ ନଥାଏ, ଥାଏ ଭାବୁକତା, ରସିକତା, ଭାବପ୍ରବଣତା । ତାହା ଶାସ୍ତ୍ରୀୟ ନ ହୋଇପାରେ, କିନ୍ତୁ ସାର୍ବଜନୀନ—ଏଥିରେ ସନ୍ଦେହ ନାହିଁ ।

ବିଶେଷକରି ଲକ୍ଷ୍ମୀନାରାୟଣ ଥିଲେ ମାନବବାଦୀ । ମନୁଷ୍ୟ ପାଇଁ ତାଙ୍କ ଅନ୍ତରରେ ଥିଲା ଅନାବିଳ ମମତା, ଶ୍ରଦ୍ଧା ଓ ଆନ୍ତରିକତା । ମଣିଷକୁ ସେ ମଣିଷ ଭଳି ଦେଖିଥିଲେ, ବୁଝିଥିଲେ । ସେଥିପାଇଁ ତାଙ୍କ ସାହିତ୍ୟ ଭୂମିକୁ

ସ୍ପର୍ଶ କରିଥିଲା । ମାଟିର ମମତା ଦେଇ ଧୂଳିମାଟିର ମଣିଷକୁ ସେ ଦେଖିଥିଲେ, ତାକୁ ପ୍ରାଣ ଦେଇ, ଅନ୍ତର ଦେଇ ଭଲ ପାଉଥିଲେ । ତା' ସୁଖଦୁଃଖର ଜୀବନକୁ ମର୍ମେ ମର୍ମେ ଅନୁଭବ କରୁଥିଲେ । ସେଥିପାଇଁ ତାଙ୍କ ସାହିତ୍ୟ କଳ୍ପନା-ବିଳାସକୁ ଅତିକ୍ରମ କରିଥିଲା । ଉଦ୍ଦେଶ୍ୟମୂଳକ ଭାବେ ଜୀବନର ବିକଟ ବାସ୍ତବତାକୁ ପ୍ରକାଶ କରିଥିଲା । ଉତ୍କଳମଣି ଗୋପବନ୍ଧୁଙ୍କ ପରି ସେ ମଧ୍ୟ ଅନ୍ୟର ଦୁଃଖ କଳ୍ପନା କରି 'ଅଭିଭୂତ ହୋଇ ପଡୁଥିଲେ । କେଉଁଠି ଏକ ଅନାମଧେୟ ନିଭୃତ କୁଟୀର କୋଣରେ ଅନ୍ନାଭାବରେ, ବସ୍ତ୍ରାଭାବରେ ଲୋତକା-ପ୍ଲୁତା ରମଣୀର ଦୁଃଖକୁ ହୃଦୟରେ ନିବିଡ଼ ଭାବେ ଅନୁଭବ କରୁ କରୁ ତାଙ୍କ ଅନ୍ତରରୁ ଉଚ୍ଛୁଳି ଉଠିଥିଲା ମର୍ମସ୍ପର୍ଶୀ କବିତା—

"ଏଇ ଦେଶ ତ ତା'ର ବଦନେ ନାହିଁ ସୁଖ
ତାର ଶରୀରେ ନାହିଁ ସଫା ଲୁଗା ଟିକକ
କିଏସେ ନେଇଛି ଛଡ଼ାଇ
ବିନ ଗତି ତାର ନାହିଁ
ପରିଶ୍ରମ ତ ସେ ଅଧିକ କରେ ଭାଇ
କିଏସେ ନେଇଛି ତାର ଅଧରୁ ଆଧାର ଛଡ଼ାଇ ?

× × ×

ଘରେ ନାହିଁ ଅନ୍ନ, ହା ଅନ୍ନ ହା ଅନ୍ନ
କରି ଗେଦୁଛି ରମଣୀ ତାର କି ଦୁଃଖ ଜାଣ ?
ଲୁଗା ନାହିଁ ତାର, ଭାତ ନାହିଁ ତାର କ'ଣ ?
ନାହିଁ ନାହିଁ କି ଏହାର କିଛି ପ୍ରତିବିଧାନ ?

—ପ୍ରବାସୀ

ବେଳେବେଳେ ତାଙ୍କ ଲେଖନୀ ଭୂମିରୁ ଭୂମାର ସନ୍ଧାନ କରେ, ଇହ ଜଗତରୁ ତୁରୀୟ ପରପାରକୁ ଚଳମାନ ହୁଏ । ସ୍ଥୂଳ ଗଜ୍ୟରୁ ସୂକ୍ଷ୍ମାତିସୂକ୍ଷ୍ମ ଅନ୍ତର୍ଜ୍ୟକୁ ଦୃଷ୍ଟି ନିକ୍ଷେପ କରେ । ସେଇଠାରେ ସେ ସୁଖଦୁଃଖର,

ପାପତାପର ସ୍ଥୂଳ ଶରୀରକୁ ଛାଡ଼ି, ସଂସାରକୁ ଛାଡ଼ି ଏକ ସ୍ଥିର ଅବିଚଳ ଆତ୍ମାର ସନ୍ଧାନ କରନ୍ତି–

"ସ୍ୱପ୍ନ ଆଉ ଜାଗରଣ ସୁଷୁପ୍ତିର ପରପାରେ
ଯେଉଁ ଆତ୍ମା ସ୍ଥିର ଅବିଚଳ
ସେ ଆତ୍ମାର ପାଏ ମୁଁ ସନ୍ଧାନ

ନିମଜ୍ଜିତ ଅନ୍ତରରେ ସେ ତୁରୀୟ ପରପାରେ
ବସିଛି ମୁଁ ଚିରଦ୍ରଷ୍ଟା
ମୃତ୍ୟୁ ମୋର ନାହି ନାହିଁ, ମୁଁ ଯେ ମୃତ୍ୟୁହୀନ ।"

(ଚିରଯୌବନ ଚିରବସନ୍ତ–ପୃ ୧୧)

ଲକ୍ଷ୍ମୀନାରାୟଣଙ୍କ ସମଗ୍ର କବିତା–ଜଗତ ପ୍ରତି ଦୃଷ୍ଟି ନିକ୍ଷେପ କଲେ ଜଣାଯାଏ ଯେ ସେ ଥିଲେ ଦରଦୀ କବି । ମାତ୍ର କବି ହେବା ତାଙ୍କର ଲକ୍ଷ୍ୟ ନଥିଲା । କବିତା ସେ ସୃଷ୍ଟି କରିବାକୁ ଚାହୁଁ ନଥିଲେ । ଚାହୁଁଥିଲେ ଅନ୍ତରର ଭାବକୁ କାଗଜ କଲମରେ କବିତା ଆକାରରେ ଫୁଟାଇବାକୁ । ସେଇଥିପାଇଁ ତାଙ୍କ କବିତାର ଛନ୍ଦ ଥିଲା ମୁକ୍ତ, ଭାଷା ଥିଲା ସରଳ ଓ ଭାବ ଥିଲା ଅନାବିଳ । ସେ ପ୍ରତି ମୁହୂର୍ତ୍ତରେ ଦେଶ, ସମାଜ ଓ ସାହିତ୍ୟ କଥା ଭାବୁଥିଲେ ଓ ଅଧ୍ୟବସାୟ ସହିତ ତା'ର ଶ୍ରୀବୃଦ୍ଧି ସାଧନ କରୁଥିଲେ । ତାଙ୍କ ଲେଖାରେ ବୌଦ୍ଧିକତା ଅପେକ୍ଷା ହାର୍ଦ୍ଦିକତା ଥିଲା ବହୁତ ବେଶୀ । ତେଣୁ ତାକୁ ପଢ଼ି ସେ ସମୟରେ କୁଳବୃଦ୍ଧ ମଧୁସୂଦନ କହିଥିଲେ–"ଆହେ ଲକ୍ଷ୍ମୀନାରାୟଣ ! ଓଡ଼ିଆ ସାହିତ୍ୟରେ ମୁଁ ପଞ୍ଚସଖା ଶବ୍ଦ ଓ ସେମାନଙ୍କ ନାମର ଉଲ୍ଲେଖ ଦେଖିଛି । ଏହି କଟକରେ ଓଡ଼ିଆ ସାହିତ୍ୟର ନବୀନ ପଞ୍ଚସଖା ବିଶ୍ୱନାଥ (କର), ବ୍ରଜସୁନ୍ଦର (ଦାସ), ଗୋପାଳ (ଚନ୍ଦ୍ର ପ୍ରହରାଜ), ଭିକାରୀ (ଚରଣ ପଟ୍ଟନାୟକ), ଶଶି (ଭୂଷଣ ରାୟ)ଙ୍କୁ ଦେଖିଛି । ସେମାନଙ୍କ ସମବେତ ଚେଷ୍ଟାରେ ଓଡ଼ିଆ ସାହିତ୍ୟ ନୂତନ ଗତି କରୁଛି । କିନ୍ତୁ ତୁମ୍ଭେ ଏକାଧାରରେ ପଞ୍ଚସଖାର ଠିକ ସମଷ୍ଟି ହେବାକୁ ଯାଉଛ । ତୁମ୍ଭର ଅଧ୍ୟବସାୟ ଜୟଯୁକ୍ତ ହେଉ ; ଏହା ମୋହର ଆଶୀର୍ବାଦ ।"

ଲକ୍ଷ୍ମୀନାରାୟଣଙ୍କ କବିତାରେ କିନ୍ତୁ ମାମୁଲି ଛନ୍ଦ, ଯତି, ଉପଧା ମିଳନ, ମିତ୍ରାକ୍ଷର, ଅମିତ୍ରାକ୍ଷର, ଅନୁପ୍ରାସ, ବିରୋଧାଭାସ ଆଦି ଅଳଙ୍କାର ଖୋଜି ପାଇବାର ପ୍ରୟାସ କରିବା ବୃଥା । ସେ ନାନା କାମରେ ଚିନ୍ତାରେ, ଝଞ୍ଜାଳରେ ଏତେ ବ୍ୟସ୍ତ, ବିବ୍ରତ ଯେ ସାହିତ୍ୟ ବା କଳାରେ ସୌନ୍ଦର୍ଯ୍ୟ ସୃଷ୍ଟି ପାଇଁ ଯେଉଁ ସଂଯମ ଓ ସାଧନା ଲୋଡ଼ା, ତା' ତାଙ୍କ ପାଖରେ ପ୍ରାୟ ନଥିଲା । ତାଙ୍କ ହୃଦୟ ଏତେ ଉଚ୍ଛନ୍ନ, ଉଦ୍‌ବେଳ ଓ ତରଙ୍ଗାୟିତ ଯେ ତାହା କିଛି ବାଧାବନ୍ଧନ ନ ମାନି ଆସି ପିଟି ହୋଇ ଯାଉଥିଲା, କରଡି ହୋଇ ଯାଉଥିଲା ବାହାରର ବେଳାଭୂମିରେ । କିନ୍ତୁ ତା' ଭିତରେ ଯେ କବିତ୍ୱ ନଥିଲା—Poesy ନଥିଲା ବା ଓ୍ୱାର୍ଡସ୍‌ଓ୍ୱାର୍ଥଙ୍କ ଭାଷାରେ ସେଗୁଡ଼ିକ ଯେ "Spontaneous overflow of powerful feelings"ବା ଅନ୍ତରର ସ୍ୱତଃସ୍ଫୂର୍ତ୍ତ ଭାବରାଜିର ଉଦ୍‌ବେଳନ ନୁହେଁ, ତା' କଦାପି କହି ହେବନାହିଁ ।

"ଭୂମା ତୁହି, ସୀମା ଭିତରେ ଦେଖୁଛି ମୁହିଁ
ମାତ୍ର ଛୁଇଁ ଦେଇ ତୋତେ ଭିତରେ ପଶେ ଯେବେ ମୁହିଁ
ପାଏ କି ଆଉ ତୋତେ ଗୋଟିଏ ଠାଇଁ ?
ତୁ ଯେ ଭରିଯାଉ ସରିଆଡ଼େ
ତୋ ଲାବଣ୍ୟ ଦିଏ ମୋତେ ଛୁଇଁ
ମୁଁ ହୋଇଯାଏ ତୁହି
ନୂତନ ମଣିଷ ତହିଁ ।"

(ଚିରଯୌବନ ଚିରବସନ୍ତ—ପୃ ୧୫)

ତେଣୁ ସାହିତ୍ୟିକ ସୁରେନ୍ଦ୍ର ମହାନ୍ତି କହନ୍ତି—"ସାହିତ୍ୟ ଥିଲା ତାଙ୍କ (ଲକ୍ଷ୍ମୀନାରାୟଣଙ୍କ) ଜୀବନ ଓ ବ୍ୟକ୍ତିତ୍ୱର ଚୂଡ଼ାନ୍ତ ଅଭିବ୍ୟକ୍ତି । ଏ ସାହିତ୍ୟରେ ଶୈଳୀ, ଆଙ୍ଗିକ ଇତ୍ୟାଦି ପୋଷାକ କଥା ଖୋଜିଲେ ମିଳିବ ନାହିଁ । ଏଥିରେ କିନ୍ତୁ ମିଳିପାରିବ ସବୁ ଉପଚାର ଊର୍ଦ୍ଧ୍ୱରେ ଅଛି ଯେଉଁ ଉପଚାର-ମୁକ୍ତ ବିଦ୍ରୋହୀ ଆତ୍ମା ।" (ଲକ୍ଷ୍ମୀନାରାୟଣ ସାହୁ ଲୋକଟି କିଏ ?—ଉପୋଦ୍‌ଘାତ)

କାହିଁକି ଲକ୍ଷ୍ମୀନାରାୟଣଙ୍କ ଭାଷା ଏଭଳି ଛନ୍ଦହୀନ, ବନ୍ଧନହୀନ ହେଲା, ତାହା ଏ ଯୁଗର କର୍ମଯୋଦ୍ଧା ଡକ୍ଟର ହରେକୃଷ୍ଣ ମହତାବଙ୍କ ଟିପ୍‌ପଣୀରୁ ବେଶ୍ ଜଣାପଡ଼େ—

"ସେ (ଲକ୍ଷ୍ମୀନାରାୟଣ) ଥିଲେ ଜଣେ ସାମାଜିକ ବିପ୍ଳବୀ । ସମାଜର ବିଭିନ୍ନ କ୍ଷେତ୍ରରେ ତାଙ୍କର ସ୍ୱାଧୀନ ବ୍ୟକ୍ତିତ୍ୱ ପ୍ରବଳ ବାଧାର ସମ୍ମୁଖୀନ ହୋଇଥିଲା । ସେ ବାଧାକୁ ସେ ଅତିକ୍ରମ କରିବା ପାଇଁ ଜୀବନବ୍ୟାପୀ ଉଦ୍ୟମ କରିଛନ୍ତି । ଏହି ଉଦ୍ୟମ ତାଙ୍କୁ ଜଣେ ବିଶିଷ୍ଟ ସମାଜ–ସେବକ କରାଇଥିଲା । ଏହି ଉଦ୍ୟମ ତାଙ୍କୁ ଜଣେ ସଂସ୍କାରକ କରାଇଥିଲା, ଏହି ଉଦ୍ୟମ ତାଙ୍କୁ ଜଣେ ଜିଦ୍‌ଖୋର ଲୋକ ମଧ୍ୟ କରାଇଥିଲା । ତାଙ୍କର ହୃଦୟର ସୂକ୍ଷ୍ମ ଶିରାପ୍ରଶିରା ଏହି ଉଦ୍ୟମରେ ଆଉ କୋମଳ ହୋଇ ରହିପାରି ନଥିଲା । ଏଣୁ ତାଙ୍କର ସାହିତ୍ୟରେ ଲାଳିତ୍ୟ ବା ଆବେଗ ସେପରି ପ୍ରକାଶ ପାଇ ନାହିଁ । କିନ୍ତୁ ସମସ୍ତ ଭାବ ସ୍ପଷ୍ଟ ଭାବରେ ବ୍ୟକ୍ତ । ସେ ନିରୁଦ୍ଦେଶ୍ୟ ଲେଖକ ନଥିଲେ କିମ୍ବା ସାହିତ୍ୟ ତାଙ୍କର ଚିତ୍ତ ବିନୋଦନ ପାଇଁ ଏକ ବିଳାସ ସାମଗ୍ରୀ ନଥିଲା । ସେ କାର୍ଯ୍ୟରତ ଥିଲେ । ସେହି ଭିତରେ ତାଙ୍କର ଚିନ୍ତା ଯେପରି ଯେଉଁ ଦିଗରେ ଗତି କରୁଥିଲା, ତାହାକୁହିଁ ସେ କାଗଜ କଲମରେ ରଖିଯାଇଛନ୍ତି । ଓଡ଼ିଆ ସାହିତ୍ୟରେ ଏପ୍ରକାର ସାହିତ୍ୟ ବିରଳ ।" (ଲକ୍ଷ୍ମୀନାରାୟଣ ଗ୍ରନ୍ଥାବଳୀ–ମୁଖବନ୍ଧ)

ଲକ୍ଷ୍ମୀନାରାୟଣ ସାହୁଙ୍କ କବିତା ସୃଷ୍ଟିରେ ବିଚରଣ କରି ଏ ଦେଶର ଚିନ୍ତାନାୟକ, ଜନନାୟକ, କବି, ଭାବୁକମାନେ ଏହାକୁହିଁ ଅନୁଭବ କରନ୍ତି ।

ଲକ୍ଷ୍ମୀନାରାୟଣ ୧୯୧୭ ଜୁନ୍ ମାସରେ ଗୋପାଳକୃଷ୍ଣ ଗୋଖ୍‌ଲେଙ୍କ ପ୍ରତିଷ୍ଠିତ ଭାରତ ସେବକ ସମିତିରେ ଯୋଗ ଦିଅନ୍ତି । ତାଙ୍କୁ ସମ୍ବର୍ଦ୍ଧନା ଜ୍ଞାପନ-କରିବା ପାଇଁ କଟକ ଟାଉନ୍‌ହଲ୍ ଠାରେ ଏକ ସଭାହୁଏ, ସେଥିରେ ତତକାଳୀନ ଓଡ଼ିଶାର ଜଣେ ପ୍ରଧାନ ସାଧାରଣସେବୀ ରାୟବାହାଦୂର ସୁଦାମ ଚରଣ ନାୟକ ସଭାପତି ହୁଅନ୍ତି । ହରେକୃଷ୍ଣ ମହତାବ, ନବକୃଷ୍ଣ ଚୌଧୁରୀ ପ୍ରଭୃତି କଲେଜଛାତ୍ର ସେ ସଭାରେ ଯୋଗ ଦିଅନ୍ତି, ହରେକୃଷ୍ଣ ମହତାବ କହନ୍ତି– "ସୁଦାମ ବାବୁ ତାଙ୍କର ଶେଷ ଭାଷଣରେ ଅଙ୍ଗୁଳି ଦେଖାଇ କହିଲେ–ଦେଖ ଲକ୍ଷ୍ମୀନାରାୟଣ, ଭାରତର ସେବାକର ପଛକେ, ଗରିବ ଓଡ଼ିଆକୁ ଭୁଲିବ ନାହିଁଟି ।" ବାସ୍ତବିକ ଲକ୍ଷ୍ମୀନାରାୟଣ ଯେତେ ଉପରକୁ ଗଲେବି ଓଡିଶା ଓ ଓଡିଆକୁ କେବେ ଭୁଲି ନାହାନ୍ତି । ବର୍ତ୍ତମାନର ଓଡିଆଙ୍କ ଦୁଃଖଦୁର୍ଦ୍ଦଶା ଦେଖି ସେ ଯେମିତି ମର୍ମାହତ, ଜର୍ଜରିତ, ଅତୀତ ଉତ୍କଳର ନୌବାଣିଜ୍ୟ, ଶିଳ୍ପସ୍ଥାପତ୍ୟ,

ରଣକୌଶଳ, ଗୌରବ ଓ ଗାରିମାରେ ସେତିକି ଗର୍ବିତ, ଉତ୍‌ଫୁଲ୍ଲିତ, ଆନନ୍ଦିତ ଓ ପୁଲକିତ । କଳିଙ୍ଗ ଖାରବେଳ ଯୁଗର କଥା ମନେ ପକାଇ ସେ କହନ୍ତି—

ଦୀପ୍ତ ଥିଲା ସେତେବେଳେ
ସୂର୍ଯ୍ୟର ମୟୂଖମାଳା
ଉଷାର କପୋଳତଳ
ରଞ୍ଜିତ ହୋଇଥିଲା କେଉଁ କାଳ,
ସେ କଳିଙ୍ଗ ଖାରବେଳ ଯୁଗର
କଥା ମନେ ପଡ଼ଇ ଯେବେ ।

× × ×

ତୂଳିକାର ସ୍ୱଚ୍ଛ ଚିତ୍ରଶାଳା ନାହିଁ ଏଥି
ଏଥି ଅଛି ସ୍ଥପତିର ସୂକ୍ଷ୍ମ ଧୈର୍ଯ୍ୟପୂର୍ଣ୍ଣ ନିହାଣ ବିନ୍ଧାଣ ।
ଭୁବନେଶ୍ୱର ଭୁବନେଶ୍ୱର ଗଢ଼ିଛି ସୁନ୍ଦର ।।
—(ପରଶ)

ପୁଣି ଜାତିର ଗତି ଓ ପ୍ରକୃତିକୁ ଅନୁଶୀଳନ ଓ ବିଶ୍ଳେଷଣ କରି ଜାତୀୟ ଜୀବନକୁ ପୁନରୁଜ୍ଜୀବିତ କରିବାକୁ—ସରସ ସୁନ୍ଦର କରିବାକୁ ସେ ଦିଅନ୍ତି ଆହ୍ୱାନ । ଭାରତୀୟ ସଂସ୍କୃତିର ଆଦର୍ଶ—ତ୍ୟାଗ, ତପସ୍ୟା, ତପୋବନର ଭୁବନେଶ୍ୱରର ଶାନ୍ତ, କାନ୍ତ, କୋମଳ, କମନୀୟ ତରୁଛାୟା ତଳେ ବସି ବିଶ୍ୱନିୟନ୍ତାଙ୍କ ଚରଣ ତଳେ ନିଜକୁ ପୂର୍ଣ୍ଣ ସମର୍ପଣ କରିଦେବାକୁ ସେ ପ୍ରାଣର ଆକୁଳ ମିନତି ଜଣାନ୍ତି ଜାତିକୁ—

" ଆରେ ମନ ନତ କର ନତ କର
ଭକ୍ତିଭରେ ଆପଣାର ଶିର,
ନାହିଁ ଏଠି ଧୂମାକୀର୍ଣ୍ଣ ଧୂଳି
ଧୂସରିତ ପାପ କୋଳାହଳ ।
ଅଛି ଏଥି ନିସ୍ତବ୍ଧ ତପୋବନ—
—ଛାୟା ଶାନ୍ତି ନିକେତନ ।

ଅଚିନ୍ତା କୁଟୀରେ ପଶି
ବ୍ରହ୍ମଚର୍ଯ୍ୟ କର ଆଶ୍ରୟ,
ଲଭିବ ଜୀବନର ଚରମ ଶାନ୍ତି
କାନ୍ତି ପ୍ରୀତି ଅଭୟ । ”

—(ପରଶ)

ଜୀବନକୁ ସରସ ସୁନ୍ଦର କରିବାକୁ ଯେମିତି ତପସ୍ୟା ଲୋଡ଼ା, ଜୀବନକୁ ଆଲୋକିତ, ଉଦ୍‌ଭାସିତ କରିବାକୁ ସେମିତି ଧର୍ମରେ, କର୍ମରେ ସ୍ୱାଧୀନତା, ମନରେ, ଆତ୍ମାରେ ପବିତ୍ରତା ଲୋଡ଼ା । ସେଥିପାଇଁ ନିଜକୁ କଠୋର କର୍ତ୍ତବ୍ୟ ପଥରେ ପରିଚାଳିତ କରିବାକୁ ହେବ । ଭଗ୍ନପାଦ ହେବାକୁ ପଡ଼ିବ । ଚିତ୍ତକୁ ଜାଗ୍ରତ କରିବାକୁ ପଡ଼ିବ, ଭୀତିଶୂନ୍ୟ କରିବାକୁ ପଡ଼ିବ । ସେଥିପାଇଁ ସେ କହନ୍ତି—

“ମୁକ୍ତ କର ବନ୍ଧନ
ଲୁପ୍ତ କର କ୍ରନ୍ଦନ
ଜାଗ୍ରତ କର ଚିତ୍
ଜୟ ହେ ଧର୍ମବିତ୍ !

ସ୍ୱାଧୀନତା ଦିଅ ଚିତ୍ତେ
ଅଧୀନ ନ କର ବିତ୍ତେ,
ଚିତ୍ତ କର ଭୀତିଶୂନ୍ୟ
କୃତ୍ୟ କରଅ ମହାଗଣ୍ୟ ।

× × ×

ଧର୍ମେ କର୍ମେ ସ୍ୱାଧୀନତା
ପୁଣ୍ୟବ୍ରତ ପବିତ୍ରତା
ନୋହିଲେ, ମୋର କେସନେ
ଆଲୋକ ହେବ ଜୀବନେ ? ”

—(ଛିନ୍ନପତ୍ର)

ପବିତ୍ର ଶରୀର, ପବିତ୍ର ମନ, ପବିତ୍ର ଆତ୍ମାର ଯୁଗେଯୁଗେ ଜୟଗାନ କରଯାଏ । ଆର୍ଯ୍ୟଋଷିର ଭାରତରେ ପବିତ୍ରତାକୁ ବାଦ୍‌ଦେଇ ଜୀବନର ସ୍ୱପ୍ନ ଦେଖାଯାଇ ପାରେନା । ତେଣୁ ଏ ଯୁଗର ଶ୍ରେଷ୍ଠ ଋଷି ଗାନ୍ଧିଜୀ କହିଲେ— ‘ The Purer I try to become, the nearer to God I feel myself to be. ”

(ମୋ ହୃଦୟ ଯେତେ ବେଶୀ ବେଶୀ ପବିତ୍ର ହୁଏ, ମୁଁ ଯେତେ ବେଶୀ ବେଶୀ ଈଶ୍ୱରଙ୍କ ସମୀପବର୍ତ୍ତୀ ହୁଏ । )

ଲକ୍ଷ୍ମୀନାରାୟଣ ବି ମର୍ମେ ମର୍ମେ ଏହି କଥା ଅନୁଭବ କରିଥିଲେ । ତେଣୁ ପବିତ୍ରତାକୁ ସେ ଆହ୍ୱାନ କରିଥିଲେ ଐକାନ୍ତିକ ଚିତ୍ତରେ–

" ଆଜି ପ୍ରଭାତ ତପନ ଉଇଁଛି
ମନ ମୋର ପବିତ୍ର ହୋଇଛି
ଶୁଦ୍ଧ ଅପାପବିଦ୍ଧ ଆସ ଏବେ
କରୁଣା କରିବ ଅଧମକୁ ଯେବେ,
ପ୍ରଭାତିଆ ପକ୍ଷୀ ଝଙ୍କାରୁଛି
ସଉ୍ରଭ ଦିଗ ଦିଗନ୍ତ ପୂରିଛି,
ପୁଷ୍ପେ ପୁଷ୍ପେ ଗନ୍ଧଭରା, ମୋ ଜୀବନ କର
ସେହିପରି ବାସଭରା, ହେ ବିଶ୍ୱମ୍ଭର !
ନମୁଛି ପୟରେ ହରି !
ଏହିପରି ଶୁଦ୍ଧ ମନ ଦିଅ ମୋତେ
ନିତି ନିତି ହେଉ ମୋ ଉନ୍ନୟନ । "

–(ଛିନ୍ନପତ୍ର)

ଜୀବନ କ୍ଷଣଭଙ୍ଗୁର । ଶାନ୍ତି, ଅବିଚଳତା, ସ୍ଥିରତା ପରିପୂର୍ଣ୍ଣ ଜୀବନର ପ୍ରଥମ ସୋପାନ । ସେହି ମୁହୂର୍ତ୍ତର ସଦୁପଯୋଗ ନିମନ୍ତେ ଆତ୍ମାକୁ ଜାଗ୍ରତ କରିବାକୁ ପଡ଼ିବ । ତତ୍ପର ହେବାକୁ ପଡ଼ିବ । କାମନା, ବାସନାରୁ ମୁକ୍ତ ହେଲେ ଚିତ୍ତ ଶାନ୍ତିରେ ଯାଇଁ ପରିପୂର୍ଣ୍ଣତା ଆସିବ ।

ତେଣୁ ଲକ୍ଷ୍ମୀନାରାୟଣ କହନ୍ତି–

"ଆସ ଶାନ୍ତ, ଅଶାନ୍ତ ହୃଦୟ କର ଶାନ୍ତ
ପ୍ରାତଃ-ପୂତ ମୁହୂର୍ତ୍ତ ହେଉଅଛି ପ୍ରାନ୍ତ ।
ଆସ ଶାନ୍ତ, ଆସ କାନ୍ତ, ଦୂର କର ଧ୍ୱାନ୍ତ
ଅଶାନ୍ତ ଚିତ୍ତ, ଅଶାନ୍ତ ବାସନା, କ୍ଳାନ୍ତ
ଅନ୍ତ ହେଉ ବାସନା, ଶାନ୍ତ ହେଉ ଚିତ୍ତ ।"

–(ଛିନ୍ନ ପତ୍ର)

ସେଇ ଶାନ୍ତ ଅବସ୍ଥାରେ କେବଳ ମଣିଷ ବିଶ୍ୱପିତାଙ୍କୁ ଅନୁଭବ କରେ । ଯାହା ଭାଷାରେ ସଂପୂର୍ଣ୍ଣ ପ୍ରକାଶ ପାଏନା । ସେ ଭାବାବେଶ କବିର ନିଜସ୍ୱ । ଅନୁଭବୀ କେବଳ ତାହା ଜାଣେ, ହୃଦୟଙ୍ଗମ କରେ । କଳ୍ପନାର, ଅନୁଭୂତିର ଅନ୍ତରାଳରୁ, ଶାନ୍ତି ଓ ମୁମୁକ୍ଷାର ବୁକୁ ଚିରି ଚିରଭାସ୍ୱର ସତ୍ତା ଅନୁଭବୀର ପ୍ରାଣରେ, କବିର ପ୍ରାଣରେ ଆହୁରି ଅଧିକ ଉଦ୍‌ଭାସିତ ହୁଏ, ସେ ଆତ୍ମ ସମର୍ପଣ କରେ । ଚିନ୍ମୟରାଜ୍ୟ ତେଇଁ ସଚ୍ଚିଦାନନ୍ଦଙ୍କୁ ଆବିଷ୍କାର କରେ । ଏହି ଅପୂର୍ବ ଭାବାବେଗ ରୂପ ନିଏ ବିଭିନ୍ନ କବିଙ୍କର ବିଭିନ୍ନ ଭାବରେ ।

'ହିମାଚଳେ ଉଦୟ ଉତ୍ସବ' ବା 'ଋଷି ପ୍ରାଣେ ଦେବାବତରଣ' ଦେଖି ଭକ୍ତକବି ମଧୁସୂଦନ ବିହ୍ୱଳ ହୋଇ କହନ୍ତି–

"ମୋ ହରି ମୋ ହରି ତୁମେ
ମୋହରି ମୋହରି ।"

କବି ମାୟାଧର ମାନସିଂହ ଗାଆନ୍ତି–

"ଭୂମା ସେ ରହିଛି ପୂରି ରେଣୁ ରେଣୁ ଭେଦି
ଅନନ୍ତ ଲୀଳାର ହେତୁ ଅସୀମ ସୁନ୍ଦର
କ୍ଷଣକେ ସୃଜେ ସେ ତା'ର ମହାପୂଜା ବେଦୀ ।"

(ମହାନଦୀରେ ଜ୍ୟୋତ୍ସ୍ନା ବିହାର)

ଆଉ ଲକ୍ଷ୍ମୀନାରାୟଣ ଗାଆନ୍ତି–

"ଭୂମା ତୁହି, ସୀମା ଭିତରେ ଦେଖୁଛି ମୁହିଁ
ମାତ୍ର ଛୁଇଁ ଦେଇ ତୋତେ ଭିତରେ ପଶେ ଯେବେ ମୁହିଁ
ପାଏ କି ଆଉ ତୋତେ ଗୋଟିଏ ଠାଇଁ ?"

(ଚିରଯୌବନ ଚିରବସନ୍ତ ପୃ. ୧୫)

ପୁଣି ଲକ୍ଷ୍ମୀନାରାୟଣ ଗାଆନ୍ତି–

"ରହିଛି ତୁମରି କୋଳେ ତୁମରି ଭିତରେ
ଭେଦି ବର୍ତ୍ତମାନ ଯିବି
ଅନନ୍ତେ, ବୁଲି ଅନନ୍ତେ, ଅନନ୍ତ ମଧ୍ୟରେ
ସଦା ମୁଁ ବିହରିବି ।" –(ଛିନ୍ନପତ୍ର)

ଲକ୍ଷ୍ମୀନାରାୟଣ ଥିଲେ ଚିର–ସାଧକ । ଜୀବନକୁ ସେ ଟିକିନିଖି ଭାବରେ ପରୀକ୍ଷା କରିଛନ୍ତି, ତପ ସାଧନା କରିଛନ୍ତି, ସିଗାରେଟ ଖାଇଛନ୍ତି, ଚୋରି କରିଛନ୍ତି, ବିଭିନ୍ନ ଶ୍ରେଣୀର ବିଭିନ୍ନ ସ୍ଥାନର ଲୋକଙ୍କ ସାଙ୍ଗରେ ମିଶିଛନ୍ତି, ବସିଛନ୍ତି, ଖାଇଛନ୍ତି, ରହିଛନ୍ତି । ସେଥିପାଇଁ ଅନ୍ତରରେ ଅନୁଭବ ଆସିଛି– ବିଶ୍ୱ ସୃଷ୍ଟିର ଅନୁପମ ସୌନ୍ଦର୍ଯ୍ୟର ଅଭିବ୍ୟକ୍ତି ମନୁଷ୍ୟ । ମରିବାକୁ, ମାରିବାକୁ ସେ ଚାହିଁନାହାନ୍ତି । ଚାହିଁଛନ୍ତି ବଞ୍ଚିବାକୁ, ବଞ୍ଚାଇବାକୁ ; ବଢ଼ିବାକୁ, ବଢ଼ାଇବାକୁ । ଚାହିଁଛନ୍ତି ସାଧନା କରିବାକୁ । କର୍ମଚଞ୍ଚଳ ହେବାକୁ ଚାହିଁଛନ୍ତି, ବିରତ ହେବାକୁ ଚାହିଁ ନାହାଁନ୍ତି ।

"ବିରତ ହୁଅ ବିରତ ହୁଅ ମାରନା ମାରନା
ଏହି ସନ୍ଧ୍ୟାରେ ଜୀବନକୁ କର ସାଧନା
ଅହଂକାର ଅଭିମାନ ଦମ୍ଭପଣ ହିଂସକ ସ୍ୱଭାବ
ଏ ସବୁ ନୁହେଁ ଭାଇ ଭଲ
ଏ ସବୁ ଅନିଷ୍ଟ କରଇ ଠାବ ।" –(ପ୍ରବାସୀ)

କର୍ତ୍ତବ୍ୟହୀନ, ଯଶହୀନ ଜୀବନ ତୁଚ୍ଛ, ନଗଣ୍ୟ । ସେଥିପାଇଁ ବଜ୍ର-ଗମ୍ଭୀର ସ୍ୱରରେ ଇଂରେଜ କବି କହିଲେ–

"We live in deeds not in years,
One crowded hour of glorious life
Is worth an age without a name".

(ଆମେ ନିଜ କାର୍ଯ୍ୟରେ ବଞ୍ଚୁ ବୟସରେ ବଞ୍ଚୁନା । ମହତ୍ତ୍ୱପୂର୍ଣ୍ଣ ଜୀବନର ଗୋଟିଏ ଘଣ୍ଟାର କୋଳାହଳ ଏକ ନୀରସ ଶୁଷ୍କ ଯୁଗଠାରୁ ଶ୍ରେୟ)
ଉତ୍କଳମଣି ଗୋପବନ୍ଧୁ ବି ସେଇ କଥା କହିଲେ–

"ମାନବ ଜୀବନ ନୁହଁଇ କେବଳ ବର୍ଷ, ମାସ, ଦିନ, ଦଣ୍ଡ
କର୍ମେ ଜୀଏଁ ନର କର୍ମ ଏକା ତା'ର ଜୀବନର ମାନଦଣ୍ଡ ।"

ଆଉ ଲକ୍ଷ୍ମୀନାରାୟଣ ଠିକ ସେଇକଥା ଆହୁରି ପ୍ରାଞ୍ଜଳ ଭାବରେ, କାବ୍ୟିକ ଢଙ୍ଗରେ କହିଛନ୍ତି–

"ମିଥ୍ୟା ସେହି ଜନ ଚରଣ ଚିହ୍ନ ଯା'ର
ନ ରହେ କାଳ ବକ୍ଷେ
ମୟୂଖ ଯାହାର କାଳ ଭେଦି ନ ଦିଏ
କିରଣ ସକଳ ମାନବ ଚକ୍ଷେ ।" —(ପ୍ରବାସୀ)

ପ୍ରକାଶ ଭଙ୍ଗୀର ମୁକ୍ତ ଛନ୍ଦ ହିଁ ଲକ୍ଷ୍ମୀନାରାୟଣଙ୍କ କବିତାଗୁଛକୁ ଅଧିକ ଭାବଗର୍ଭକ ଓ ବାସ୍ତବ କରିଛି । ଯଦି କବିତାରେ ଛନ୍ଦ, ପଦଲାଳିତ୍ୟ, ଯତି, ଯମକ, ଉପଧାମିଳନ ଥାଆନ୍ତା, ବୋଧହୁଏ ସେ ମନର ଭାବକୁ ଏତେ ସରସ, ସୁନ୍ଦର, ଜୀବନ୍ତ ଭାବରେ ପ୍ରକାଶ କରି ପାରିନଥାନ୍ତେ । ନର ଓ ନାରୀ ଏକ ବୃନ୍ତରେ ସୃଷ୍ଟିର ଦୁଇଟି ପ୍ରସ୍ଫୁଟିତ କଳିକା । କଳ୍ପନା ରାଜ୍ୟରେ ବିଚରଣ କରୁକରୁ ନାରୀ ସୃଷ୍ଟିର ବୈଚିତ୍ର୍ୟକୁ ଲକ୍ଷ୍ମୀନାରାୟଣ କି ଚମତ୍କାର ଭଙ୍ଗୀରେ ରୂପ ଦେଇଛନ୍ତି, କେତେ ହୃଦୟସ୍ପର୍ଶୀ କରିଛନ୍ତି, ଦେଖନ୍ତୁ ।

"ଧାତା ରଚିବାକୁ ନାରୀ,
ଦେଖିଲେ ନର ରଚନାରେ ସବୁ ଦେଇଛନ୍ତି ସାରି ।
ଭାବିଲେ ତେଣୁ ସଂଗ୍ରହ କରି ରଚିବେ ସେ ନାରୀ ।

ସଂହାରିଲେ ତେଣୁ ଚନ୍ଦ୍ରର ବର୍ତ୍ତୁଳ ଆକାର,
ଲତାର ଲହକ ସୂକ୍ଷ୍ମ ସୂତ୍ର ପତ୍ରର,
ଘାସର କମ୍ପନ, ଶରର ଯେ ସରୁପଣ
ପୁଷ୍ପର ପ୍ରସ୍ଫୁଟନ, ପତ୍ରର ନିଓଜନ,
ହସ୍ତୀର କ୍ରମସରୁ ଶୁଣ୍ଢଧାର, ଭ୍ରମରର ପୁଞ୍ଜଧାର ।
ଅରୁଣ କିରଣର ମଧୁ ଉଜ୍ଜ୍ୱଳତା
ବାରିଦର କ୍ରନ୍ଦନ, ପବନର ଚଞ୍ଚଳତା,
ଠେକୁଆର ଭୀତି, ମୟୂରର ଅହଂକାର
ଶୁକର ବକ୍ଷ-କୋମଳତା,
କାଠିନ୍ୟ ପଥରର ।
ମଧୁର ମିଷ୍ଟତା, ବ୍ୟାଘ୍ରର ନିର୍ଦ୍ଦୟତା
ଅଗ୍ନିର ଦୀପ୍ତ ତେଜ, ତୁଷାରର ଶୈତ୍ୟ,

କାକର କା' କା', କୋକିଳର କୁହୁକୁହୁ
ସାରସର ଅସାରଲ୍ୟ, ଚକ୍ରବାକର ବିଶ୍ୱସ୍ତତା ।
ରଚିଲେ ନାରୀ ବିଧାତା ମିଶାଇ ଏତେ
ଉପହାର ଦେଲେ ନାରୀ ନର ହାତେ ।
ନାରୀ ଘେନି ନର ରହିଲେ ସାତ ଦିନ
ତହିଁ ପରେ ଆସି ବିଧାତା ପାଶେ କଲେ ବଖାଣ ।
ନାହି ଲୋଡ଼ା ମୋର ଏହି ନାରୀରେ
ଦିନ ଗଚି ମୋତେ ବଡ଼ ହରବର କରେ,
କିଏ ତାହା ପାଇଁ ଦିନରାତି ନାହିଁ ଜଗି ବସିବ ?
ନିଅ ନିଅ ପ୍ରଭୁ ଫେରାଇ ଦେଇଥିଲ ଯେଉଁ ବିଭବ,
ଧାତା ନେଲେ ଫେରାଇ,
ନର ଏକ ଆପଣା ଘରେ ଚଳଇ,
ସାତ ଦିନେ ପୁଣି ନର ଆସିଲେ ଫେରି
କହିଲେ ବିଧାତଃ, ନାରୀ ଅଭାବରେ ନିର୍ଜନ ଲାଗୁଛି ଘରି,
ନାଚୁଥିଲା ସେ କେତେ ଗାଉଥିଲା ଯେତେ
ଆଖି କୋଣେ ପୁଣି ସେ ଚାହୁଁଥିଲା ମୋତେ
ଖେଳୁଥିଲା ମୋ ସାଥେ, ଭିଡୁଥିଲା ମୋତେ ଯେତେ
ହସ ଥିଲା ତା'ର ସଙ୍ଗୀତେ, ରୂପ ତା'ର
କରୁଥିଲା ପ୍ରୀତି ମୋତେ,
ପରଶେ ତାହାର ହରଷ ହେଉଥିଲା ମୋହର
ଦିଅନ୍ତୁ ମୋତେ ଫେରାଇ
ନାରୀ ବିନା ରହି ନ ପାରଇ ।"
—'ମୋହନ'
( ଲକ୍ଷ୍ମୀନାରାୟଣ ଗ୍ରନ୍ଥାବଳୀ—ପୃ ୮୫—୮୬ )

ବାଇବେଲରେ ଠିକ୍ ଏଇ କଥା । ସୃଷ୍ଟିର ପ୍ରଥମ ମନୁଷ୍ୟ ଆଦାମ୍ ଏଇ କଥା କହିଥିଲା ଈଶ୍ୱରଙ୍କୁ—

" I Cannot live with Eve, I also
Cannot live without Eve."

( ମୁଁ ତାକୁ ପାଖରେ ରଖି ବଞ୍ଚିପାରିବି ନାହିଁ କି ତାକୁ ପାଖରୁ ଛାଡ଼ି ବଞ୍ଚିପାରିବି ନାହିଁ । )

ସୃଷ୍ଟିର ଏଇ ଚିରନ୍ତନ ରହସ୍ୟ । ଚିରନ୍ତନ ସନ୍ତୋଷଅସନ୍ତୋଷ, ଚିରନ୍ତନ ରାଗରୁଷା କଳହ, ପୁଣି ପ୍ରେମ, ପ୍ରୀତି, ବନ୍ଧନ, ଚୁମ୍ବନ ଅତି ସୁନ୍ଦର ଭାବେ କାବ୍ୟିକ ରୀତିରେ ବର୍ଣ୍ଣନା କରିଛନ୍ତି ଲକ୍ଷ୍ମୀନାରାୟଣ ।

ବିଶ୍ୱକବି ରବୀନ୍ଦ୍ରନାଥ ତାଙ୍କ ପ୍ରସିଦ୍ଧ କବିତା 'ଅର୍ଦ୍ଧେକ ମାନିବୀ ତୁମି ଅର୍ଦ୍ଧେକ କଳ୍ପନା'ରେ କେବଳ ନାରୀର ବର୍ଣ୍ଣ, ଗନ୍ଧ, ଭୂଷଣ, ପୁଷ୍ପ ସମ୍ଭାର ବା ରଙ୍ଗ ଚରଣର ବର୍ଣ୍ଣନା କରିଛନ୍ତି । କିନ୍ତୁ ଲକ୍ଷ୍ମୀନାରାୟଣ ଆହୁରି ପାଦେ ଉପରକୁ ଉଠି ନାରୀର ଫୁଲ ଭଳି କୋମଳ, ବଜ୍ରଭଳି କଠିନ ହୃଦୟ, ତା'ର ଭୟ, ଅହଙ୍କାର, ଅଭିମାନ, ହିଂସା, ଈର୍ଷା, ମମତା, କୋମଳତା, ମଧୁର ମିଷ୍ଟତା, ବ୍ୟାଘ୍ରର ନିର୍ଦ୍ଦୟତା, ପଥରର କାଠିନ୍ୟ ଆଦି ବର୍ଣ୍ଣନା କରି ଏକ ଜୀବନ୍ତ, ବାସ୍ତବ, ନିଖୁଣ, ଚିତ୍ର ଦେଇଛନ୍ତି ଖାଲି ଦେହର ନୁହେଁ, ମନର, ହୃଦୟର, ଅନ୍ତରର ଅନ୍ତରତମ ସ୍ଥଳର, ନାରୀ ସମ୍ପର୍କରେ ଏଭଳି ଗଭିର ମନସ୍ତାତ୍ତ୍ୱିକ ବିଶ୍ଳେଷଣ ଓଡ଼ିଆ ସାହିତ୍ୟରେ କ୍ୱଚିତ ମିଳେ ।

ଉପରୋକ୍ତ ଉପମାବାଳୀରେ ଛନ୍ଦଗୁଞ୍ଜନ ନାହିଁ, ଉପେନ୍ଦ୍ରଙ୍କ ପରି ସାବଲୀଳତା ନାହିଁ, ଧାରବାହିକତା ନାହିଁ, ଉଭୟ ରୂପ, ଗୁଣ, ପ୍ରକୃତି ଓ ପ୍ରବୃତ୍ତିକୁ ସେ କୌଣସି ନିର୍ଦ୍ଦିଷ୍ଟ ଫର୍ମୁଲା ଭିତରେ ନରଖି ବର୍ଣ୍ଣନା କରିଯାଇଛନ୍ତି ଅତି ସରଳ ଭାବରେ । ଏହା ପାଠକ ପ୍ରାଣରେ ଅନୁଭବ ଆଣେ, ମାତ୍ର ରସାପ୍ଲୁତ କରେ ନାହିଁ; ଆନନ୍ଦ ସଞ୍ଚାର କରେ, ମାତ୍ର ଭାବାବେଗ ଆଣେ ନାହିଁ, ବାସ୍ତବ ପ୍ରତିଛବି ବାଢ଼େ, ମାତ୍ର ଅତୀନ୍ଦ୍ରିୟ ଦେଶକୁ ନେଇଯାଏ ନାହିଁ ।

ଲକ୍ଷ୍ମୀନାରାୟଣ ଜୀବନରେ ବାସ୍ତବତା ସହିତ ଏ ଦେଶର ପାଣି ପବନ, କେଦାର ପ୍ରାନ୍ତର, ବନ ବନାନୀ, ଅତୀତ ବର୍ତ୍ତମାନ ଭବିଷ୍ୟତ—ସବୁକୁ ଅନ୍ତରେ ଅନ୍ତରେ ଅନୁଭବ କରିଥିଲେ । ପୁଣି ଅନୁଭବ କରିଥିଲେ ଏ ଦେଶର କବି, ଭାବୁକ, ଚିନ୍ତାନାୟକଙ୍କର ଅନ୍ତର । ସେ ସାହିତ୍ୟ ରାଜ୍ୟରେ ବିରଚଣ କରି ଅନୁଭବ କରିଛନ୍ତି ଏ ଦେଶର କବି ଲେଖକଙ୍କୁ । ସେ ଉପେନ୍ଦ୍ର ଭଞ୍ଜ ନୁହଁନ୍ତି, ନୁହଁନ୍ତି ରାଧାନାଥ । ତାଙ୍କ ସାହିତ୍ୟରେ ଉପେନ୍ଦ୍ର ଭଞ୍ଜଙ୍କ ମଣିପ୍ରବାଳ ଶୈଳୀ

ନାହିଁ କି କଳ୍ପନାର ତୁଙ୍ଗିମା ନାହିଁ, କି ନାହିଁ ରାଧାନାଥଙ୍କ ପ୍ରକୃତି–ପ୍ରାଣତା । ମାତ୍ର ଅଛି ସେମାନଙ୍କ ସାହିତ୍ୟ କୃତି ପାଇଁ ଅନାବିଳ ମମତା । ସେଥିପାଇଁ ସେ କହନ୍ତି–

"ମୃତ ? କିଏ କହେ ରାଧାନାଥ, ଉପେନ୍ଦ୍ରଭଞ୍ଜ
ଆଉ ଆଉ କବିକୁଳ ଯେତେ, ମୃତ ?
ପାପର ପୁଣ୍ୟର କେତେକଥା, ପ୍ରେମର,
ଅମୃତର, ବିରହର ଯେତେ ବ୍ୟଥା,
ସବୁ ଲେଖିଗଲେ ରାତିଦିନ ବସି,
କେତେ ଭଳି, କେତେ ରସି,
କହୁଛ ତୁମେ ସେମାନେ ମୃତ ? "

(—ଆଶୀର୍ବାଦ)
(ଲକ୍ଷ୍ମୀନାରାୟଣ ଗ୍ରନ୍ଥାବଳୀ-ପୃ ୬୭)

ରାଧାନାଥଙ୍କୁ, ଉପେନ୍ଦ୍ର ଭଞ୍ଜଙ୍କୁ ଯିଏ ଅନୁଭବ କରିଥିଲ, ବାସ୍ତବରେ କ'ଣ ତାଙ୍କ ସାହିତ୍ୟ ଅନୁପ୍ରାସ, ଯତି, ଯମକ, ପ୍ରକୃତିର ରମଣୀୟ ବର୍ଣ୍ଣନାରୁ ମୁକ୍ତ ? ଦେଖାଯାଉ ତେବେ ଲକ୍ଷ୍ମୀନାରାୟଣଙ୍କ ସାହିତ୍ୟ ଜଗତ । ଖୋଜା-ଯାଉ.........

ଉପେନ୍ଦ୍ର ଭଞ୍ଜଙ୍କ ଭଳି ସେ ଉପମା ଦେବାକୁ ଚାହିଁଛନ୍ତି । ମାତ୍ର ସେ ଉପମା ଅନ୍ୟ ଏକ ସୌନ୍ଦର୍ଯ୍ୟ ବସ୍ତୁରେ କେନ୍ଦ୍ରୀଭୂତ ନୁହେଁ । ବିଶ୍ୱ ସୃଷ୍ଟିରେ ସେ ସମସ୍ତ ବସ୍ତୁକୁ ଉପମାର ସ୍ଥଳ ଧରି ନେଇଛନ୍ତି, ସେଥିପାଇଁ ହୁଏତ ସମାଲୋଚନା ଦୃଷ୍ଟିରୁ ତାଙ୍କର ଉପମା ଯଥାର୍ଥ ଗୌରବ ବହନ କରି ପାରିବ ନାହିଁ । ମାତ୍ର ସେ କବିତାରେ ଉପମାର ସନ୍ଧାନ କରିଛନ୍ତି ।

ଲକ୍ଷ୍ମୀନାରାୟଣଙ୍କ ସୃଷ୍ଟିରେ ଅନୁପ୍ରାସ ନାହିଁ କହି ହେବ ନାହିଁ । ବରଂ ସେ କବିସୂର୍ଯ୍ୟଙ୍କ 'ଫାଟି ପଡ଼ିବାର ନିକୁଞ୍ଜ ସଞ୍ଚାର' 'ଫ' ଗୀତ ପରି ଗୋଟିଏ ସମ୍ପୂର୍ଣ୍ଣ ଛାନ୍ଦ ଲେଖିଛନ୍ତି । ଏଥିରେ ଅନେକଗୁଡ଼ିଏ ଅଭିନବ ଶବ୍ଦକୁ ସେ ଅଙ୍ଗୀଭୂତ କରିଛନ୍ତି । ଯଥା–ଫୁଲରି, ଫରୁଆ, ଫନ୍ଦିଫିକର, ଫଟା ଦରିଆ ଇତ୍ୟାଦି । ଅନୁପ୍ରାସ ଶୈଳୀ ଦୃଷ୍ଟିରୁ ସେ ଏଠାରେ ସମ୍ପୂର୍ଣ୍ଣ ସଫଳ ହୋଇଛନ୍ତି ।

"ଫାଟି ପଡ଼ିବାର          କରମ ଆମ୍ଭର
ଛାଡି ପଗ ଲକ୍ଷ୍ମୀବର
ଫିଟାଇଲ ଏହି          ଦିନେ ଦୟାବହି
କୃପା କଟାକ୍ଷ ଦୁଆର ହେ
ଲକ୍ଷ୍ମୀଧର
ଫେଡ଼ି ଅଜ୍ଞାନ ଅନ୍ଧାର
ଫୁଟାଇ ଦେଇଛ          ଦେଶହେବା ପୁଷ୍ପ
ବାହୁଦା ତୀରେ ଆମ୍ଭର । ୧ ।

ଫକୀରମାନଙ୍କ          କୁଟୀରରେ ତବ
ପଡ଼ିଛି ଚରଣ ରଜ
ଫୁଲଗି ଉଠିଛି          ଶୁଷ୍କ ତରୁ ଫଳ
ନିସ୍ତେଜ ହେଲ ସତେଜ ହେ କବିବର
ଫୁରୁସତ ନାହିଁ ଦଣ୍ଡେ
ଫତୁରୀ ସମାନ          ବୁଲିଲ ଆପଣ
ନୂଆପଡ଼ା ଧୂଳିଦାଣ୍ଡେ । ୨ ।

ପୁଣି ଶେଷରେ ଲେଖିଛନ୍ତି—

'ଫ' ଅନୁପ୍ରାସରେ          ଲେଖିଲି ହରଷେ
କ୍ଷମା ହେଉ ଦୋଷ ମୋର ହେ
କ୍ଷମାସାର
ଫରିଆଦ ପିଲଙ୍କର
ଫେରି ଆଉ କେବେ          ଗହାସ ଦେଖିବେ
ଏହି ଭିକ୍ଷା ଦାସଙ୍କର । ୮ ।

(ଲକ୍ଷ୍ମୀନାରାୟଣ ଗ୍ରନ୍ଥାବଳୀ—ପୃ·୮୧·୮୨)

(ମୁଜାଫରପୁର ଜେଲରେ ବନ୍ଦୀ ହୋଇଥିଲା ବେଳେ ଉତ୍କଳମଣି ଗୋପବନ୍ଧୁ ଗୋଟିଏ ପତ୍ର ଲେଖିଥିଲେ । ସେହି ପତ୍ରର 'ସ୍ନେହୋପହାର' ଏଇ କବିତା । )

ସେ କିଛିକାଳ ରାଜନୀତି କରିଥିଲେ ବି ସେ ନିଜେ କହନ୍ତି– "ରାଜନୀତି ମୁଁ ବୁଝେନା, ବୁଝେ ଦେଶପ୍ରୀତି ।" ତେଣୁ ରାଜନୀତିର ମାରପେଞ୍ଚ, ଧରବାନ୍ଧ ନୀତିଠାରୁ ସେ ବହୁ ଦୂରରେ, ସେ କହନ୍ତି–

"ଏହି ପରା ତୋ ରାଜନୀତି ନିୟମରେ
ବୁଦ୍ଧି ବ୍ୟବହାର ଅପୂର୍ବ ସୁନ୍ଦର
ତୋହର ବିଚାର ସେ ରେ ।
ଧିକ ଧିକ ତୋତେ ଜନମ ଲଭିଲୁ
ଏଥିପାଇଁ କି ରେ,
ଦିନୁ ଦିନୁ ବଢ଼ି ସଢ଼ି ସଢ଼ି ସଢ଼ି
ହେଲୁ ପରା ଏବେ ଚୂ'ରେ ।

× × ×

ଅଛି ତୋ ମରଣ ଧିଆନ କରିଣ
ବିଭୁଙ୍କୁ ଥାପ ଅନ୍ତରେ
ବେଳ ଥାଉଁ ଥାଉଁ ଭୁଲ ନା'ରେ ଆଉ
ଜୀବନ କର ଉଚ୍ଛରେ ।"

(ଲକ୍ଷ୍ମୀନାରାୟଣ ଗ୍ରନ୍ଥାବଳୀ-ପୃ-୮୨-୮୩)

ସେଇ ବିଭୁଙ୍କ ଚରଣ ତଳେ ଦ୍ରୌପଦୀ ଭଳି ନିଜକୁ ସମ୍ପୂର୍ଣ୍ଣ ସମର୍ପଣ କରି ଦେବ ରେ ତାଙ୍କର ଆନନ୍ଦ । ପ୍ରତି ବଦଳରେ ସେ କିଛି...କିଛି ମାତ୍ର ଗ୍ରହାଁନ୍ତି ନାହିଁ । ବରଂ ବେଳେ ବେଳେ ନିଜକୁ ଧିକ୍କାର କରନ୍ତି ନିଜର କୃତଘ୍ନତା ପାଇଁ ।

କବି ବୈକୁଣ୍ଠନାଥ ଗାଇଲେ–

"ଜୀବନ ପାତ୍ର ମୋ ଭରିଛ କେତେମତେ
ନ ଦେଲ ବୋଲି କିଛି କହିବି କି'ହେ ଆଉ",

କବି ଲକ୍ଷ୍ମୀନାରାୟଣ ବି ଅନୁରୂପ ଗାଇଲେ–

"ମୋତେ ଦେଇଛ ପ୍ରଭୁ
ମୁଁ ବାରେବାରେ ନିନ୍ଦେ କାହିଁକି ?

ମୁଁ ଯେ ଅଜ୍ଞାନ ବିଭୁ,
ମୋର ମୂର୍ଖତା ତୁମ୍ଭେ ଜାଣିନାହିଁକି ?
ମୁଁ ଯେ ଚିର ପାଉଥାଏ ତୁମ୍ଭ ଅନୁଗ୍ରହ
ନିନ୍ଦେ ପୁଣି ଟିକିଏ ନ ପାଇଲେ ହେ ଦୟାମୟ,"
—'ମୋହନ'
(ଲକ୍ଷ୍ମୀନାରାୟଣ ଗ୍ରନ୍ଥାବଳୀ-ପୃ ୭୮)

ମାନବ ଅନ୍ତରକୁ ପରିଷ୍କାର କରି ଜୀବନଗାଥା ସେ ସବୁବେଳେ ଗାଇଛନ୍ତି । ସତ୍ୟ, ଶାନ୍ତି, ପ୍ରୀତି ଦ୍ୱାରା ଏ ଯୋଗ ଭବାର୍ଣ୍ଣବକୁ ପାରିହେବା କେବଳ ସମ୍ଭବ । ସେଥିପାଇଁ ସାଧନା ଲୋଡ଼ା, ତପସ୍ୟା ଲୋଡ଼ା । ମଳିନ ଦେହ ପାଣିରେ ଧୁଆଯାଇ ପାରେ, ମାତ୍ର ଅନ୍ତର ? ଏହି ଦାର୍ଶନିକ ଚିନ୍ତାଧାରାକୁ ସେ ରୂପ ଦିଅନ୍ତି—

"ମଳିନ ଦେହଟା ପାଣିରେ ଧୋଇବି
ଅନ୍ତର ଧୋଇବି କାହିଁ ?
କେଉଁ ଘାଟ ବାଟ କହିଦେବ କିଏ
ଆସ ହେ କରୁଣା ବହି ।
ଶ୍ୟାମଳ ତରୁର ଶୀତଳ ଛାୟାରେ
ବସି ଦିନ ଦି'ପହରେ,
ବାଟୋଇଟା କାନ୍ଦେ ବାଟହରା ହୋଇ
କହିଦିଅ ବାଟ ଥରେ ।"
—'ପାସୋରା'
(ଲକ୍ଷ୍ମୀନାରାୟଣ ଗ୍ରନ୍ଥାବଳୀ-ପୃ ୯୧)

ଭାରତର ଆର୍ଯ୍ୟଋଷି ଗାଇଲେ—

"ଶ୍ଳୋକାର୍ଦ୍ଧେନ ପ୍ରବକ୍ଷାମି ଯଦୁକ୍ତଂ ଗ୍ରନ୍ଥ କୋଟିଭିଃ
ବ୍ରହ୍ମସତ୍ୟ ଜଗନ୍ମିଥ୍ୟା ଜୀବ ବ୍ରହ୍ମୈବ'ନା ପରଃ ।"

ଲକ୍ଷ୍ମୀନାରାୟଣ ସେହିଭଳି ଶେଷକୁ ଏତେ ଈଶ୍ୱର ପ୍ରାଣ ହୋଇଗଲେ ଯେ ସେ ଜଳସ୍ଥଳ, ବନଗିରି, ଆକାଶ ଅବନି ସର୍ବତ୍ର କେବଳ ଈଶ୍ୱରଙ୍କୁ

ଦେଖିଲେ ଏବଂ ଈଶ୍ୱରହିଁ ଏକମାତ୍ର ତ୍ରାଣକର୍ତ୍ତା ବୋଲି ବୁଝିପାରିଲେ । ତେଣୁ ଗାଇଲେ—

"ପରଗଣର ବ୍ୟଥା ଯେ ଜାଣେ
ସେ ପରମ ଆତ୍ମୀୟ
ତାହାରେ ଲଭି ଜୀବନ ଭବେ
ଶାନ୍ତିର ନିଳୟ ।

× × ×

ମେଘ ଛାଇ ଯାଏ ଯେବେ ଆକାଶେ
ଗଗନର ଦୀପ ଲୁଚିଯାଏ କେଉଁ ଦିଶେ,
ଧରଗଣୀ ବଦନେ ବିଷାଦ ଛାୟା
ଘେରି ବୁଲେ ଯେଝେ ଏ କି ମାୟା
ଫିଟିଯାଏ ପୁଣି ସୂର୍ଯ୍ୟ ଆଲୋକ ଆସେ
ମନ ମୋହର ତହିଁ ସୁଖେ ଦୁଃଖେ ଭସେ ।
ଏହିପରି ବୁଲି ବୁଲି ମହୀ
ଯାଉଥାଏ ଯେବେ ଅଜଣା ପଥେ
ଉଦେ ହୁଅନ୍ତି ଯେହୁ ଅରୁଣ ରଥେ
ନମସ୍କାର ନମସ୍କାର ନମସ୍କାର ତାହାରେ
କିଛି ନେହୁ ପଛେ ସେ ଅଛନ୍ତିରେ ।"

ଲକ୍ଷ୍ମୀନାରାୟଣ ଗ୍ରନ୍ଥାବଳୀ (ମଧୁରେଖା ପୃ. ୬୮)

ତାଙ୍କ ଜୀବନ ଚିର ଧାବମାନ, ଚିର ପ୍ରବହମାନ । କେଉଁଠି ସେ ଅଟକି ଯାଇ ନାହାଁନ୍ତି, ବିଶ୍ରାମ ନେଇ ନାହାଁନ୍ତି, ଖାଲି ଧାଉଁଛନ୍ତି, ଧାଉଁଛନ୍ତି ।

"ଝଡ଼ଝଞ୍ଜା ପରି ଧାଇଁ ଯହିଁ ତହିଁ
କରିଛି ଜନର ସେବା,
ତ୍ୟାଜି ନିଜ ସ୍ୱାର୍ଥ ନିଃସ୍ୱାର୍ଥ କରଣେ
ଭୁଲିଛି ନିଜକୁ ଅବା।"

'ପାସୋର'—ଲକ୍ଷ୍ମୀନାରାୟଣ ଗ୍ରନ୍ଥାବଳୀ ପୃ· ୮୯

ତଥାପି ସେ ଶାନ୍ତ ନୁହଁନ୍ତି । ସେ ଆହୁରି ଆହୁରି ଆଗକୁ ଯିବାକୁ ଘୁହାଁନ୍ତି । ଚରୈବତି, ଚରୈବତି । ଆରମ କାହିଁ ? 'ଆରମ ହାରମ୍ ହେ'– ଜବାହାରଲାଲ ଯାହା କହିଥିଲେ, ଲକ୍ଷ୍ମୀନାରାୟଣ ତା' ଜୀବନରେ ପଦେପଦେ ଦେଖାଇ ଦେଇଗଲେ ।

ଆମେରିକାର କବି ରବର୍ଟ ଫ୍ରଷ୍ଟ (Rabert Frost) କହିଲେ–

"The woods are lovely, dark and deep.
But I have promises to keep,
And miles to go before I sleep,
And miles to go before I sleep"

( ସବୁଜ ଏ ବନଭୂଇଁ ମନୋହର, ତମସ, ଗମ୍ଭୀର
ତଥାପି ରହିବି ମୁହିଁ ଶତ ମୋର ସଙ୍କଳ୍ପେ ସ୍ଥିର,
ଆଗରେ ରହିଛି ପଡ଼ି ଦୂର ପଥ ବହୁ କ୍ରୋଶ ବ୍ୟାପୀ
ଯାତ୍ରୀ ମୁଁ ଚାଲିଛି ପୁଣି ଚାଲିଥିବି ନ ବୁଜୁଣୁ ଆଖି । )

ଉତ୍କଳମଣି ଗୋପବନ୍ଧୁ କହିଲେ–

"ଗିରି ଶିଖେ ଲୟ ରଖି ଚାଲିବି ମୁକର ।"

(ଅବକାଶ ଚିନ୍ତା-ପୃ ୯୧)

ଲକ୍ଷ୍ମୀନାରାୟଣ ବି ଠିକ୍ ସେହିକଥା କହନ୍ତି–

"ଜୀବନ ମୋହର ଧାଏଁ ଖରତର
ଶଇଳ ଶିଖର ଦିଶେ
ସୁନୀଳ ସାଗର ଅଭିମୁଖେ ମୋର
ଧାଇଁଛି ଚିତ୍ତ ବିବଶେ ।"

–'ପାସୋର'

ଲକ୍ଷ୍ମୀନାରାୟଣ ଗ୍ରନ୍ଥାବଳୀ-ପୃ-୮୭

କିନ୍ତୁ ଜୀବନ ତାଙ୍କର ନଈଟିଏ ଭଳି । ଖାଲି ସାଗରକୁ ବହି ଯାଇ ନାହିଁ । ତଟବାସୀ ଜନଙ୍କୁ ବହୁ ନୀର ଦେଇଛି, କ୍ଷୀର ଦେଇଛି. ଅମୃତ ଦେଇଛି, ମଧୁ ଚଖେଇଛି । କବି ଗଙ୍ଗାଧରଙ୍କ ଭଷାରେ–

"ଜୀବନ କରୁଛି ସଫଳ
ତୋୟଦାନେ ତୋଷି ତୀରବାସୀ ସକଳ"
(ତପସ୍ୱିନୀ)

ଲକ୍ଷ୍ମୀନାରାୟଣଙ୍କ ଜୀବନ ଏକ ସଫଳ ଜୀବନ, ସାର୍ଥକ ଜୀବନ—ଏହା ନିଃସନ୍ଦେହ ।

କେବଳ ଓଡ଼ିଆ ଭାଷାରେ ନୁହେଁ, ହିନ୍ଦୀ, ବଙ୍ଗଳା, ଇଂରେଜି, ସଂସ୍କୃତ—ଏହି ପାଞ୍ଚ ଭାଷାରେ ସେ ଅତି ସ୍ୱଚ୍ଛନ୍ଦ, ସାବଲୀଳ ଭଙ୍ଗୀରେ ଗଣିଗଣି କବିତା ଲେଖି ଯାଇଛନ୍ତି । ସବୁ ପ୍ରକାର କବିତାରେ ତାଙ୍କୁ ଜଣେ ଧୂଳିମାଟିର ପରିପୂର୍ଣ୍ଣ ମଣିଷ ଓ ଜଣେ ଅତି ଦରଦୀ, ସ୍ନେହୀ ଓ ଈଶ୍ୱର-ପ୍ରାଣ କବି ହିସାବରେ ଅନୁଭବ କରିହୁଏ । ତାଙ୍କ କବିତାରେ ଭାଷା ଅଛି, ଢ଼ମଗୁମନ ନାହିଁ । ଭାବ ଅଛି, ଲାଳିତ୍ୟ ନାହିଁ; ହୃଦୟବତ୍ତା ଅଛି, ଖାଲି ପ୍ରକାଶ ଭଙ୍ଗୀରେ ବୌଦ୍ଧିକତା ନାହିଁ ।

ତାଙ୍କ ବଙ୍ଗଳା କବିତା :

"ଆଛେନ୍ ତିନି ସବ୍ ଜାୟଗାୟ ଘୂରେ ଘୂରେ,
ଆଛେନ୍ ତିନି ତୋମାର୍ ଆମାର୍ ଭିତରେ,
ଆଛେନ୍ ତିନି ଯେଖାନେ ଦାରିଦ୍ର୍ୟ ଘେରେ,
ଆଛେନ୍ ତିନି ପଶୁ ପକ୍ଷୀ କୀଟ ପତଙ୍ଗ
ଯେଥାୟ ଆନନ୍ଦ କରେ,
ଆଛେନ୍ ତିନି ସମୁଦ୍ରେର ଉଚ୍ଛ୍ୱାସେ,
ଆଛେନ୍ ତିନି କିଞ୍ଜଲ୍କେର ଅଣୁ ଅଣୁତେ,
ଯେଖାନେ ବାରି ବରଷେ—
ଆଛେନ୍ ତିନି ହୟେ ଆମାର ନିଶ୍ୱାସ ପ୍ରଶ୍ୱାସ,
ଆଛେନ୍ ତିନି ଆମାର ଘରିଧାରେ
ଏତ ଭବେ, ଏତ ନିକଟେ, ଏତ ଘନିଷ୍ଠତାୟ ଆଛେନ୍ ତିନି
ତବୁ ଆମି ବିଶ୍ୱାସ ହ.ଗଇ, ବଲି
"କୋଥାୟ କୋଥାୟ ଆଛେନ୍ ତିନି!"
(ହୃଦୟ ପୁଷ୍ପ-ପୃ ୫୬)

ତାଙ୍କ ଇଂରେଜି କବିତା :

"Where are they who are gone
to sleep ahead of us?
Where are we? And where shall we be?
No, like molten mass we roll and roll
But we do not die,
We live like burning coal."

( 'In Pain and Sadnen'
ଲକ୍ଷ୍ମୀନାରାୟଣ ଗ୍ରନ୍ଥାବଳୀ–ପୃ ୧୯)

(ସେମାନେ କାହାନ୍ତି ଯେଉଁମାନେ
ଆମ ଆଗରୁ ଶୋଇବାକୁ ଚାଲିଗଲେଣି ?
ଆମେ କେଉଁଠି ଅଛୁ ?
ଆମେ କେଉଁଠି ରହିବୁ ?
ନା, ତରଳ ଧାତୁ ଭଳି
ଆମେ ଖାଲି ଗଡୁଛୁ, ଗଡୁଛୁ,
କିନ୍ତୁ ଆମେ ମରୁ ନାହୁଁ,
ଆମେ ଜଳନ୍ତା କୋଇଲା ଭଳି ବଞ୍ଚି ରହିଛୁ । )

ତାଙ୍କ ହିନ୍ଦୀ କବିତା :

ଦିଲ୍ ମେ ଯବ୍ ଧଡକତୀ ହେ
ମିଲ୍‌ନେ କେ ଲିୟେ ଆଗ୍ ଅପନୀ କୌମକେ ସାଥ୍,
କୋନ୍ ରୋକ୍ ସକତା ହେ
ୟହ ପ୍ରେମ୍‌କା ବନ୍ଧନ
ହୃଦୟ ମେ ଯବ୍ ଚଲତୀ ହେ ବାତ୍ ।"
—(ମୋ ବାରବୁଲ ଜୀବନ-ପୃ ୧୭)

ତାଙ୍କ ସଂସ୍କୃତ କବିତା

"ଜୀବନଂ ମମ ସୁନ୍ଦରଂ କୁତ୍ର କୁତ୍ର ତ୍ବଂ ସତ୍ବରଂ
ଅଜୀବନଂ କରେମ୍ୟହଂ ଅପେକ୍ଷାଂ ହୃଦ୍ଗତରମ ।

× × ×

ଏ କୋହି ଆଲୋକ-ସ୍ତମ୍ଭ ପ୍ରତିଭାତି ହୃଦୟେ ମମ
ବିଶ୍ୱାସେ ନ ଭିନ୍ନ ଦେହଃ ଜୟତି ଜୀବତି ସତତମ୍ ।
(ମୋ ବାରବୁଲ୍ଲ ଜୀବନ-ପୃ ୧୪୭)

ତାଙ୍କ ଓଡ଼ିଆ କବିତା :

"ଦେଖି ଦେଲେ ପେଟ ପୂରିଗଲା,
ଏତେ ସ୍ନେହ ଏତେ ଶୋଭମାଳା,
କୁଞ୍ଜଲତା ପୁଷ୍ପଭର ଆଭା
ହସିହସି ଶଶୀ ସ୍ନେହେ ଗଭା ।

ପ୍ରେମପୂର୍ଣ୍ଣ, ଆଖି ନିରିମାଖୀ
ଶୋକ ଶୋଷ ଯିବ ଭୁଲି ଶୋକୀ,
ଜୀବ ଯିବ ଯାଉ ପଛେ ସେହି
ଯାହା ଦେଖେ ତୃଷ୍ଣ ସେହି ପାଇଁ ।

ଆଉ ଦିନେ ପଛେ ମୁଁ ଖାଇବି
ଆଜି ଯାଏ ଦେଖି ସ୍ନେହ ପବି,
ଶୁଦ୍ଧ କର ସ୍ନେହ ଚଣ୍ଡ ଅଗ୍ନି
ଏହିପରି ଆଣି ତବ ଭଗ୍ନୀ ।

ବ୍ୟବହାର ମଧୁ ମଧୁ ଯା'ର
ପୁଣି ସେହି ପୂର୍ଣ୍ଣ ନିରଧାର,
ସ୍ୱାର୍ଥ ନାହିଁ ଚିଲେ ମାତ୍ର ନାହିଁ
ଗ୍ଲରି ଚକ୍ଷୁ ବର୍ଷୁ ସୁଧା ବହି ।"
( ମୋ ବାରବୁଲ୍ଲ ଜୀବନ-ପୃ ୧୪୫ )

ଗୋଟିଏ ଝିଅ ପାଇଁ କି ମମତା ! କି ଆକୁଳତା !

ଏଇ ତାଙ୍କ କବିତା, ଏଇ ତାଙ୍କ କବିତାର ଆଲୋକ, ପୁଲକ, ଝଲକ ଓ କାନ୍ତି । କିଏ ଗ୍ରହଣ କରୁ ବା ନ କରୁ, ସେ ଲେଖି ଗ୍ଲଲିଛନ୍ତି, ମାଡ଼ି ଗ୍ଲଲିଛନ୍ତି ଆଗକୁ ଆଗକୁ ।

ଏକ ନିରପେକ୍ଷ ବିଗ୍ଚରକ ହେଇ ଆପଣ ବିଗ୍ଚର କରନ୍ତୁ—ଏଥିରେ କବିତା ଅଛି କି ନାହିଁ, Poesy ଅଛି କି ନାହିଁ । ଏହା ଆମ ଅନ୍ତରର ଅନ୍ତରତମ ସ୍ଥାନକୁ ସ୍ପର୍ଶ କରୁଛି କି ନାହିଁ, ଏବଂ ଏହା ପଢ଼ିଲେ ବେଳେବେଳେ ଆମ ନୟନ ଲୋତକାପ୍ଲୁତ ହେଉଛି କି ନାହିଁ ।

ପଦ୍ମଶ୍ରୀ କବି ସଚ୍ଚି ରାଉତରାୟ କହିଥିଲେ—"ସାହୁଙ୍କର କବିତା ତାଙ୍କ ହୃଦୟର ନିର୍ଝରରେ ଭରପୂର । ସେଥିରେ ଆବିଳତା ବୋଲି କିଛି ନାହିଁ । ତାଙ୍କ କବିତାଗୁଡ଼ିକ ପଢ଼ିଲାବେଳେ ତାଙ୍କର ଆବେଗପ୍ଲୁତ ବ୍ୟକ୍ତିତ୍ୱର ଚେହେରା ଆଖି ଆଗରେ ସ୍ୱତଃ ଝଲସି ଉଠେ । ସେ ଯାହା ଠିକ୍ ଯେପରି ଭାବରେ ନିଜକୁ ପ୍ରକାଶ କରି ଯାଇଛନ୍ତି ତାଙ୍କର ଅସଂଖ୍ୟ କାବ୍ୟକୃତିରେ । କେଉଁଠାରେ ନିଜକୁ ସଜାଇବାକୁ ବା ଘୋଡ଼ାଇବାକୁ ଚେଷ୍ଟା କରିନାହାଁନ୍ତି ।

ଗ୍ରାହକତାର ନିନ୍ଦା ପ୍ରଶଂସା କିମ୍ବା ପ୍ରଚଳିତ ଧାରାର ଦାବୀ ତ୍ରୁଟି ପ୍ରତି ସେ ଆଦୌ ଭ୍ରୂକ୍ଷେପ କରି ନାହାଁନ୍ତି ।"

( ଚିର ଯୌବନ ଚିରବସନ୍ତ-ପୃ ୫୯ )

ଲକ୍ଷ୍ମୀନାରାୟଣ କହନ୍ତି-ଆମେରିକାର କବି ଓ୍ୟାଲଟ୍ ହୁଇଟ୍‌ମ୍ୟାନ୍ ( Walt Whitman ) ଙ୍କ 'Leaves of grass' ପଢ଼ି ସେ ଏତେ ମୁଗ୍ଧ ଓ ଉଦ୍‌ବେଳିତ ହେଇଯାଇଥିଲେ ଯେ ଏଣିକି ଲମ୍ବା ଲମ୍ବା କବିତା ଲେଖିବାକୁ ସାହସ କଲେ । ଇଂରେଜୀରେ ମଧ୍ୟ ବହୁ କବିତା ଲେଖିଲେ । ତାଙ୍କ ବନ୍ଧୁମାନେ ତାଙ୍କ ଇଂରେଜୀ କବିତା ପଢ଼ି ଖୁବ୍ ପ୍ରଶଂସା କରନ୍ତି ଓ କହନ୍ତି—"ଆପଣଙ୍କ ଇଂରେଜୀ କବିତା ଓଡ଼ିଆ କବିତା ଠାରୁ ଭଲ ।"

ଲକ୍ଷ୍ମୀନାରାୟଣ ନିଜେ କହନ୍ତି—"ମୁଁ କବିତା ଲେଖାରେ ଆଉ ଗୋଟିଏ କଥା ଅନୁଭବ କରିଅଛି । ବଙ୍ଗଳାରେ କବିତା ଲେଖିଲେ ଯାହା ଫୁଟିଉଠେ, ତାହା ହୁଏତ ଓଡ଼ିଆ ଠାରୁ ମୋତେ ନିଜକୁ ଭଲ ଜଣାଯାଏ ।"

(ମୋ ବାରବୁଲା ଜୀବନ-ପୃ ୧୪୪)

ଥରେ ଡକ୍ଟର ମାୟାଧର ମାନସିଂହ ତାଙ୍କ କବିତା ପଢ଼ି କହିଲେ—ଆପଣଙ୍କ ଭାବ ତ ବେଶ୍ ଅଛି, କିନ୍ତୁ ଧାଡ଼ି ପଦ ଇତ୍ୟାଦି ଠିକ୍ କରି ବସାଉ ନାହାନ୍ତି କାହିଁକି ? ଛନ୍ଦ ଠିକ୍ କରିବା ପାଇଁ ଚେଷ୍ଟା କରୁନାହାନ୍ତି କାହିଁକି ?

ଲକ୍ଷ୍ମୀନାରାୟଣ କହିଲେ —ମୋର ବିଚ୍ଛନ୍ଦ ଜୀବନରେ ଯେଉଁ ଜାଗାରେ ଛନ୍ଦ ପଡ଼ିଛି ଆଉ ଯେଉଁ ଜାଗାରେ ଛନ୍ଦ ଖସିଯାଇଛି, ସେ ଉଭୟ ମୋର ଅନ୍ତର୍ଜୀବନର ପ୍ରକୃତ ପରିଚାୟକ । ତାକୁ କାହିଁକି କ୍ଷୁର୍ଣ୍ଣ କରିବି ?

ଲକ୍ଷ୍ମୀନାରାୟଣଙ୍କ ଓଡ଼ିଆ, ବଙ୍ଗଳା, ଇଂରେଜୀ କବିତା ପଢ଼ି ତତ୍‌କାଳୀନ ଓଡ଼ିଶାର ତଥା ଓଡ଼ିଶା ବାହାର ବଙ୍ଗଳା, ମାନ୍ଦ୍ରାଜ, କେରଳ, ଆନ୍ଧ୍ରର ଯେଉଁ ବିଶିଷ୍ଟ ସୁଧୀଜନ, କବି, ଦେଶସେବୀ, ସମ୍ପାଦକ ଯେତେ ଯେତେ ପ୍ରଶଂସା କରି ଲେଖିଥିଲେ, ତା' ପଢ଼ିଲେ ବାସ୍ତବିକ୍ ଜଣେ ଅଭିଭୂତ ହୋଇଯାଏ—ହତବାକ୍ ହୋଇ ରହିଯାଏ କ୍ଷଣକାଳ ।

ତାଙ୍କ କବିତା 'ବିକ୍ରମ ଦେବ' ପାଠ ପରେ ପରମ ଦରଦୀ ସ୍ୱାମୀ ବିଚିତ୍ରାନନ୍ଦ ଦାସ ଯାହା ଲେଖିଥିଲେ, ତାହା ପରିଶିଷ୍ଟରେ ଦ୍ରଷ୍ଟବ୍ୟ ।

କବି ସତ୍ୟ, ଶିବ, ସୁନ୍ଦରର ଉପାସକ; କବି ଶକ୍ତି, ସାହସ, ପ୍ରେରଣା, ଉଦ୍ଦୀପନାର ଉପାସକ । ବନ୍ଧୁ ବଳ ଦିଏ ନଦୀ ଥଳ ଦିଏ ଭଳି କବି ଜାତିକୁ ସକଳ ବିପଦରେ, ଦୁର୍ଦ୍ଦିନରେ, ଅନ୍ଧକାରରେ ଆଲୋକ ଦେଖାଏ; ଧର୍ମପଥରେ ଘେନିଯାଏ. ମୁକ୍ତିର ମାର୍ଗ ଦେଖାଏ, ଈଶ୍ୱର-ପ୍ରାଣ କରଏ । ସେହି ପଥରେ—ସେହି ନୈତିକତା ପଥରେ, ଧର୍ମ ପଥରେ ଲକ୍ଷ୍ମୀନାରାୟଣ ଚାଲିଛନ୍ତି ଅବିରତ, ନିଜେ କିଛି ଚାହିଁ ନାହାନ୍ତି । କିଛି ନେଇ ନାହାନ୍ତି ।

ଇଂରେଜୀରେ ଜଣେ କବି କହିଛନ୍ତି—

' There is pleasure in walking naked"

ଲକ୍ଷ୍ମୀନାରାୟଣ ଯଦି ସେମିତି ଲଙ୍ଗଳା ହୋଇ, ସବୁ ଈଶ୍ୱରଙ୍କଠାରେ ସମର୍ପି ଦେଇ, ଜ୍ଞାନଧ୍ୟାନ, ମାନମହତ, ଜୀବନଯୌବନ, ଯଶପୌରୁଷ ସବୁ ଭୂମାଙ୍କ ଚରଣରେ ଥାପନା କରି, ଏଇ ଭୂଇଁରେ ଖାଲିଖାଲି ପାଦରେ ଚୈତନ୍ୟଙ୍କ ଭଳି ନାଚିଲେ, ଗାଇଲେ, କୁଦିଲେ, ଡେ଼ଇଁଲେ, ମନ ଅବୁଝା ଗୀତ ଗାଇଲେ ବିଭୁଙ୍କ ପାଇଁ, ଝରଝର ଲୁହ ଢାଳିଦେଲେ ବିଭୁଙ୍କ ପାଇଁ । ତେବେ ସେ କ'ଣ କବି ନୁହଁନ୍ତି ? ସ୍ରଷ୍ଟା ନୁହଁନ୍ତି ? ଦ୍ରଷ୍ଟା ନୁହଁନ୍ତି ? କାହାରି ମଙ୍ଗଳକାରୀ ନୁହଁନ୍ତି ? କବି ତ ମଣିଷର ମଙ୍ଗଳ କରେ । ମାଟିରୁ ଧୀରେ-

ଧୀରେ ଆକାଶକୁ ଉଠାଏ ମଣିଷକୁ । ନ ହେଲ, କବି ରକେଟ୍‌ରେ ବସେଇ ଚଟ୍‌କିନି ମଣିଷକୁ ଉଠେଇ ନିଏ । ଢ଼େଙ୍ଗା ଲକ୍ଷ୍ମୀନାରାୟଣ କାନ୍ଧରେ ବସେଇ ଧୀରେଧୀରେ ଉଠେଇଲେ । ହଉ, ସିଏ କଣ ସେବା ନୁହେଁ ?

ପଲଶ ଫୁଲର ମହକ ନାହିଁ,
ତଥାପି ସିଏ ତ ଗୋଟାଏ ଫୁଲ"

ଲକ୍ଷ୍ମୀନାରାୟଣଙ୍କ କବିତା ଭଳି ତାଙ୍କ ପ୍ରବନ୍ଧ, ଗବେଷଣା, ରମ୍ୟ-ରଚନା, ଗଳ୍ପ, ଉପନ୍ୟାସ ଜୀବନୀ, ଆତ୍ମଜୀବନୀ ପ୍ରତ୍ୟେକଟିରେ ତାଙ୍କର ଗୋଟିଏ ଗୋଟିଏ ସ୍ୱତନ୍ତ୍ର ଅବଦାନ ରହିଛି । ତାଙ୍କ ଜୀବନ-ଦର୍ଶନ ପ୍ରତ୍ୟେକ-ଟିରେ ପ୍ରତିଫଳିତ । ସେ ନିଜେ ଯେଉଳି ମୁକ୍ତ, ଛନ୍ଦହୀନ, ପ୍ରାଣପ୍ରାଚୁର୍ଯ୍ୟରେ ଭରପୂର, ତାଙ୍କ ଲେଖାଗୁଡ଼ିକ ସେମିତି ସ୍ୱଚ୍ଛ, ନିର୍ମଳ, ହୃଦୟସ୍ପର୍ଶୀ ଓ ରସୋତ୍ତୀର୍ଣ୍ଣ ।

## ତାଙ୍କ ପ୍ରବନ୍ଧ ଓ ରମ୍ୟ ରଚନା :

ତାଙ୍କ ପ୍ରବନ୍ଧଗୁଡିକ ଅତି ଉଚ୍ଚକୋଟୀର । ଭାଷା ଦୃଷ୍ଟିରୁ ଓ ସାହିତ୍ୟ ଦୃଷ୍ଟିରୁ ଲକ୍ଷ୍ମୀନାରାୟଣଙ୍କ ପ୍ରବନ୍ଧଗୁଡ଼ିକ ତାଙ୍କର ଅନ୍ୟ ଲେଖାଠାରୁ ଅଧିକ ସଫଳ ଓ ସାର୍ଥକ । ଏଥିରେ ଭାଷା ମାର୍ଜିତ, ଭାବ ଯୁକ୍ତିସମ୍ମତ ଓ ବିଶ୍ଳେଷଣାତ୍ମକ । ଖାଲି ହୃଦୟବତ୍ତା ନୁହେଁ, ବୌଦ୍ଧିକତା ଦ୍ୱାରା ମଧ୍ୟ ଏହା ପରିପୁଷ୍ଟ । ଗଭୀର ଚିନ୍ତା, ଚେତନା, ସାଧନା ଓ ଅଧ୍ୟୟନ ଏଥିରେ ସ୍ପଷ୍ଟ ଭାବରେ ପ୍ରତିଫଳିତ । ତାଙ୍କର ବହୁତୋମୁଖୀ ପ୍ରତିଭା, ଜ୍ଞାନପିପାସା, ଜ୍ଞାନଚର୍ଚ୍ଚା, ଜ୍ଞାନାର୍ଜ୍ଜନ ଏହି ପ୍ରବନ୍ଧମାନଙ୍କରେ ଅତି ବିଶ୍ୱସ୍ତ ଭାବେ ପ୍ରତିବିମ୍ବିତ ।

କଳା, ବେଶ୍ୟା ଓ ଶିକ୍ଷା ନାମକ ତିନୋଟି ଅତି ଉପାଦେୟ ପ୍ରବନ୍ଧ ସେ 'ଉତ୍କଳ ସାହିତ୍ୟ ସମାଜ'ରେ ଡକ୍ଟର ପ୍ରାଣକୃଷ୍ଣ ପରିଜା ସଭାପତି ଥିଲାବେଳେ ପାଠ କରିଥିଲେ । ସୁଧୀଜନ ମଣ୍ଡଳିରେ ତା ବେଶ୍ ଉଚ୍ଚ ପ୍ରଶଂସିତ ହୋଇଥିଲା ବୋଲି ନିଜେ ଲକ୍ଷ୍ମୀନାରାୟଣ କହନ୍ତି । କିନ୍ତୁ ଦୁଃଖର କଥା ଏବେ ବେଶ୍ୟା ଓ ଶିକ୍ଷା ଦୁଷ୍ପ୍ରାପ୍ୟ । ଏବେ ମିଳୁଥିବା ପ୍ରବନ୍ଧମାନଙ୍କ ମଧ୍ୟରେ ଧର୍ମାନ୍ତର ଗ୍ରହଣ, ଧୂଳି, ଶାନ୍ତି, ଅଜ୍ଞାତବାସ ଓ ନାରୀର ଅବମାନନା, ଉତ୍କଳୀୟ ଓ ତା'ର ବୈଶିଷ୍ଟ୍ୟ; ଓଡ଼ିଆର ଜାତୀୟଜୀବନ

ଓଡ଼ିଆ ଭାଷାର ବୁଦ୍ଧିବୈଭବ, ବ୍ୟାବହାରିକ ବ୍ରହ୍ମବିଦ୍ୟା, ମରହଟ୍ଟା ଓ ବ୍ରିଟିଶ ଶାସନ କାଳରେ ବାରବାଟୀ, ହିନ୍ଦୁ-ମୁସଲମାନ, ଗୋ-ରକ୍ଷା, ଅସ୍ପୃଶ୍ୟତା, ଅଶ୍ଳୀଳତା, ମାନବର ଧର୍ମ, ମୁଁ ଓଡ଼ିଆ, ଜୀବନ ଓ ଜୀବନୀ, ଗୁପ୍ତବିଦ୍ୟା ଆଦି ପ୍ରଧାନ । ସେଗୁଡ଼ିକ ଯେପରି ପାଣ୍ଡିତ୍ୟପୂର୍ଣ୍ଣ, ଚିନ୍ତା-ପ୍ରସୂତ, ସେହିଭଳି ଉପାଦେୟ ଓ ଶିକ୍ଷାପ୍ରଦ । ଗଭୀର ମନନଶୀଳତାର ଛାପ ପ୍ରତିଟି ପ୍ରବନ୍ଧରେ । ବହୁ ମଧ୍ୟରୁ ଗୋଟିଏ, ଯୋଡ଼ିଏର ଉଦାହରଣ ଦିଏ । ସେ ତାଙ୍କର 'ସ୍ୱପ୍ନ' ନାମକ ପ୍ରବନ୍ଧରେ ଲେଖନ୍ତି–

"ଅନେକ ସମୟରେ ନିରାଶାରେ ହତାଶାରେ ପଡ଼ିବାକୁ ହେଉଅଛି । ତଥାପି କିଏ ଜଣେ ହାତ ଦେଖାଉଛି,ଇଙ୍ଗିତ କରୁଛି ଯେପରି ବିଷଣ୍ଣହୁଅ ନାହିଁ, ହତାଶ ହୁଅ ନାହିଁ–ତିମିର ଭେଦକରି ସୂର୍ଯ୍ୟର ସମ୍ମୁଖୀନ ହେବ–କୁହେଳି ଭେଦ କରି ଉପରକୁ ଉଠିବ–ମନ୍ଦାକିନୀର ଶୀତଳ ଧାରରେ ଅବଗାହନ କରି ପୂତ ପବିତ୍ର ହେବ–ଏବଂ ଦେବଦିଦେବ ମହାଦେବଙ୍କ ସ୍ଫୁରିତ ଈଷତ ମନ୍ଦ ମଧୁର ପ୍ରେମ କଷାୟିତ ଲୋଚନ ଦେଖି ମୁଗ୍ଧ ହେବ ଏବଂ ଆଶୀର୍ବାଦ ଲାଭ କରିବ । ସେହି ଆଶାରେ ଏହି ଚେଷ୍ଟା–ଏହି ଶତ ଶତ ବ୍ୟର୍ଥତା ମଧ୍ୟରେ ମାନବକୁ ଯିବାକୁ ପଡ଼ିବ ।"

(ଲକ୍ଷ୍ମୀନାରାୟଣ ଗ୍ରନ୍ଥାବଳୀ–ପୃ ୧୯୬)

ସେ 'ଶାନ୍ତି' ପ୍ରବନ୍ଧରେ ଲେଖିଛନ୍ତି–

"ଅନ୍ୟର ଉପକାର କରିବାକୁ ଯାଇ ନିଜର ଜୀବନର ସମତା ନଷ୍ଟ କରିବା ଉଚିତ ନୁହେଁ । ଯଦି କେହି ଅଜ୍ଞ, ଅମାନିଆ, ହୁଙ୍କୁଡ଼ିଆ, ଦୁଷ୍ଟ, ପାଜି, ବଦ୍‌ମାସ ଥାଏ ସେ ଯଦି ଯୁକ୍ତିକରେ, କୁଯୁକ୍ତି, ହୁଙ୍କୁଡି କରେ–ନ ହେଲା ନାହିଁ, ତାକୁ ଉପଦେଶ ଦେବା ଦରକାର ନାହିଁ । ତା'କୁ କିଛି କହିବା ଦରକାର ନାହିଁ । ସେ ଆପଣାର ହେଉ ବା ପରର ହେଉ, ସର୍ବଦା ଆପଣାକୁ ରକ୍ଷା କରିବ । ଆପଣାର ସମତା ରକ୍ଷା କରିବ, କେବେହେଁ ନିଜର ହୃଦୟର ସୁନ୍ଦର ଭାବ ଉପରେ ତୁମେ ଆଘାତ କରିବାକୁ ଯିବ ନାହିଁ । ତୁମେ ହୁଏତ ଭାବୁଛ ସେ ଅଜ୍ଞ, ତୁମର ହୃଦୟର ସୁନ୍ଦର ଭାବ ଉପରେ ଆଘାତ କରୁଛି । ତୁମେ କରୁ ନାହଁ । କିନ୍ତୁ ତାହା ଭ୍ରମ, ଭୁଲ୍ । ତୁମେ ହିଁ ଆଘାତ କରୁଛ । ତୁମ ନିଜର

କାର୍ଯ୍ୟ ଦ୍ୱାରା ଅପର ତୁମକୁ ଆଘାତ କରିପାରିବ ନାହିଁ । ଯଦି ତୁମେ ଏପରି ଗୋଟିଏ ମନୋଭାବ ଧର ଯେ ଅପର କ'ଣ କରିବ ।

ଅତଏବ ନିଜର ମନର ସମତା ରକ୍ଷା କର, ଧୈର୍ଯ୍ୟଚ୍ୟୁତି ଘଟାଇବାକୁ ଦିଅ ନାହିଁ—ପରାସ୍ତ ହେଲ ବୋଲି ଭାବ ଅନ୍ତରରେ ଆଣ ନାହିଁ—କିଏ ଆଘାତ କଲା ବୋଲି ଭାବ ନାହିଁ ।

ଆଉ ଗୋଟିଏ କଥା । ଯେଉଁସବୁ କାରଣରୁ ନିଜର ଜୀବନର ସମତା ନଷ୍ଟ ହୁଏ ସେମାନଙ୍କଠାରୁ ଦୂରରେ ରହିବାକୁ ଚେଷ୍ଟା କର ।

ହୁଏତ ଭାବିବ ଯେ ସେମାନଙ୍କଠାରୁ ଦୂରରେ ରହିଲେ ଆପଣାର ଲୋକ, ଆପଣାର ପ୍ରିୟଠାରୁ ହୁଏତ ଦୂରରେ ରହିବାକୁ ହେବ, କାରଣ ବେଶୀ ଦୁଃଖ ଜୀବନରେ ତାହାରିଠାରୁ ଆସେ ଯାହାକୁ କି ତୁମେ ଭଲ ପାଅ, ଯା' ପ୍ରତି ତୁମେ ଅନୁରକ୍ତ ।

ଅତଏବ ଅନୁରକ୍ତିର ମାତ୍ରା ଧୀରେ କମାଅ, ଛାଡ଼ିଦିଅ, । ବିବେକ ବୈରାଗ୍ୟ ଦ୍ୱାରା ଆପଣାର ଜୀବନକୁ ସୁଶୋଭିତ କରିବାକୁ ଚେଷ୍ଟା କର । ନୋହିଲେ ଜୀବନ ଅନନ୍ତ ନରକ ହୋଇଯିବ —ଜୀବନରେ ତପ୍ତ କଟାହରେ ପୋଡ଼ି ମରିବାକୁ ହେବ ।''

(ଲକ୍ଷ୍ମୀନାରାୟଣ ଗ୍ରନ୍ଥାବଳୀ—ପୃ ୧୯୭-୧୯୮)

ଏହିଭଳି ପ୍ରବନ୍ଧରେ ଜୀବନ ଗଠନ ପାଇଁ କେତେଗୁଡ଼ିଏ ଦାର୍ଶନିକ ତଥ୍ୟ ଓ ବାସ୍ତବ ସତ୍ୟକୁ ସେ ଆବିଷ୍କାର କରିଛନ୍ତି ।

## ତାଙ୍କ ଗବେଷଣା

ପରିଣତ ବୟସରେ ମଧ୍ୟ ଲକ୍ଷ୍ମୀନାରାୟଣ କେତେକ ଗୁରୁତ୍ୱପୂର୍ଣ୍ଣ ବିଷୟରେ ସର୍ବଦା ଗବେଷଣାରତ ଥିଲେ । ଓଡ଼ିଶାର ଖଣ୍ଡଗିରି, ଉଦୟଗିରି, କେନ୍ଦୁଝର, ସମ୍ବଲପୁର ଆଦି ବହୁ ଦୁର୍ଗମ ଅଞ୍ଚଳକୁ ଯାଇ, ତଥ୍ୟ ସଂଗ୍ରହ କରି ଓ ଦିଲ୍ଲୀ, କଲିକତା, ମାନ୍ଦ୍ରାଜର ଜାତୀୟ ଗ୍ରନ୍ଥାଗାର (National Library) ରେ ଗଭୀର ଅଧ୍ୟୟନ କରି, ବିଷୟବସ୍ତୁ ସଂଗ୍ରହ କରି କଠିନ ପରିଶ୍ରମପୂର୍ବକ ଓଡ଼ିଶାରେ ଜୈନଧର୍ମ ସମ୍ପର୍କରେ ସେ ଏକ ନିବନ୍ଧ ପ୍ରକାଶ

କରିଥିଲେ ଏବଂ ଉତ୍କଳ ବିଶ୍ୱବିଦ୍ୟାଳୟରେ ବିଧିବଦ୍ଧ ଭାବରେ ତାହା ଉପସ୍ଥାପନ କରିଥିଲେ ତାଙ୍କର ପି. ଏଚ୍, ଡ଼ି. ଥେସିସ୍ ପାଇଁ । ପରେ ଅବଶ୍ୟ ତାଙ୍କୁ ଉତ୍କଳ ବିଶ୍ୱବିଦ୍ୟାଳୟ ତରଫରୁ ସମ୍ମାନସୂଚକ ଡ଼ିଲିଟ୍ ଉପାଧି ପ୍ରଦାନ କରଯାଇଥିଲା । କିନ୍ତୁ ତାଙ୍କ ନିବନ୍ଧର ମାନ କୌଣସି ଗୁଣରେ ନିମ୍ନ ନ ଥିଲା ବୋଲି ପଣ୍ଡିତ ନୀଳକଣ୍ଠ ଓ ଡକ୍ଟର ଆର୍ତ୍ତବଲ୍ଲଭ ମହାନ୍ତିଙ୍କ ଭଳି ବହୁ ମନୀଷୀ ମୁକ୍ତ କଣ୍ଠରେ ସ୍ୱୀକାର କରିଛନ୍ତି । ଏବେ ତାଙ୍କର ଦୁଇଗୋଟି ପୁସ୍ତକ— "ଓଡିଶାରେ ଜୈନଧର୍ମ", "ଓଡ଼ିଶା ଓ ଜୈନଧର୍ମ" ମୁଦ୍ରିତ ହୋଇ ପଣ୍ଡିତ ମଣ୍ଡଳିଙ୍କ ଦ୍ୱାର ବେଶ୍ ଆଦୃତ ହୋଇଅଛି ।• ଏହି ପାଣ୍ଡିତପୂର୍ଣ୍ଣ ଗବେଷଣା ପାଇଁ ତାଙ୍କୁ 'ପୃଥିବୀ ଜୈନ ମିଶନ' ତରଫରୁ "ଇତିହାସ-ରତ୍ନ" ଉପାଧିରେ ଭୂଷିତ କରଯାଇଅଛି । ଏବେ ମଧ୍ୟ ତାଙ୍କ 'ଓଡ଼ିଶାରେ ଜୈନଧର୍ମ' ଗ୍ରନ୍ଥଟି ଉତ୍କଳ ବିଶ୍ୱବିଦ୍ୟାଳୟ ତଥା ସମ୍ବଲପୁର, ବ୍ରହ୍ମପୁର, ଗର୍ଞ୍ଜି ବିଶ୍ୱବିଦ୍ୟାଳୟମାନଙ୍କରେ ଜୈନଧର୍ମ ସମ୍ପର୍କରେ ଏକମାତ୍ର ପ୍ରାମାଣିକ ଗ୍ରନ୍ଥ ରୂପେ ବିବେଚିତ ଓ ଗୃହୀତ ।

ଏହି ଗ୍ରନ୍ଥ ସମ୍ପର୍କରେ ପଣ୍ଡିତ ନୀଳକଣ୍ଠ ଦାସ କହନ୍ତି—

"ପଦ୍ମଶ୍ରୀ ଶ୍ରୀ ଲକ୍ଷ୍ମୀନାରାୟଣ ସାହୁ ଏ ପରିଣତ ବୟସରେ ପୂର୍ବାପର ସଙ୍ଗତି ସହିତ ବିଧିବଦ୍ଧ ଭାବରେ ଜୈନଧର୍ମ ସମ୍ବନ୍ଧରେ ଗୋଟିଏ ଗ୍ରନ୍ଥ ଲେଖିଛନ୍ତି । ଏ ଗ୍ରନ୍ଥଟି ବିଶ୍ୱବିଦ୍ୟାଳୟକୁ ଦେଇ ସେଥିପାଇଁ ସେ ଡକ୍ଟର ଉପାଧି ପାଇବେ ବୋଲି ତାଙ୍କର କଳ୍ପନା । ଜୈନଧର୍ମ ସମ୍ବନ୍ଧରେ—ବିଶେଷତଃ ଓଡ଼ିଶାରେ ଜୈନଧର୍ମ ସମ୍ବନ୍ଧରେ—ଏପରି ଅନ୍ୟ ଏକ ଗ୍ରନ୍ଥ ମୁଁ ଦେଖିନାହିଁ । ଏପର୍ଯ୍ୟନ୍ତ ମିଳିଥିବା ଓଡ଼ିଶାର ଧର୍ମରାଜ୍ୟରେ ଯେପରି ଜୈନଧର୍ମର ସ୍ଥାନ ରହିଆସିଛି, ତାହା ସେ ଇତିହାସ ପରଂପରା ଓ ସାମାଜିକ ବିଶ୍ୱାସ ଅନୁଷ୍ଠାନ ପ୍ରଭୃତିରୁ ବହୁ ଯତ୍ନ କରି ସଂଗ୍ରହ ଓ ଆଲୋଚନା କରିଛନ୍ତି । ମଧ୍ୟେ ମଧ୍ୟେ ପ୍ରସଙ୍ଗକ୍ରମେ ସେ ଐତିହାସିକ ଗବେଷଣାର ନୂତନ ଆବିଷ୍କାରମାନଙ୍କ ପ୍ରତି ଯେ ସାଦର ନିର୍ଦ୍ଦେଶ କରିଛନ୍ତି, ସେ ସବୁ ବଡ଼ ଉପାଦେୟ ହୋଇଛି ।

(ମୋ ବାରବୁଲା ଜୀବନ—ପୃ ୨୯ ପରିଶିଷ୍ଟ)

ପ୍ରଫେସର ଡକ୍ଟର ଆର୍ତ୍ତବଲ୍ଲଭ ମହାନ୍ତି କହନ୍ତି—

"ଡ଼କ୍ଟର ଲକ୍ଷ୍ମୀନାରାୟଣ ସାହୁ, ଏମ.ଏ ବହୁ ଗବେଷଣାପୂର୍ବକ ଜୈନଧର୍ମ ତଥା ଉତ୍କଳରେ ତାହାର ପ୍ରଚଳନ ତଥା ଧର୍ମ ଜଗତରେ ତାହାର

ପ୍ରଭାବ ସମ୍ବନ୍ଧରେ ଗୋଟିଏ ଉପାଦେୟ ଗ୍ରନ୍ଥ ରଚନା କରି ଓଡ଼ିଆ ଭାଷାରେ ଏକ ପ୍ରଧାନ ଅଭାବ ପୂରଣ କରିଅଛନ୍ତି । ଏ ଗ୍ରନ୍ଥ ଓଡ଼ିଆ ଭାଷାରେ ନୂତନ । ତେଣୁ ସେ ଧନ୍ୟବାଦାର୍ହ ।

ଜୈନଧର୍ମ କାହିଁ କେନ୍ଦୁଝରର ଅଞ୍ଚଳରୁ ଖଣ୍ଡଗିରି ଓ ଉଦୟଗିରି ପର୍ଯ୍ୟନ୍ତ ଓ ଅନ୍ୟତ୍ର ବିରାଜମାନ । ଏହା ବହୁ ଗବେଷଣା-ସାପେକ୍ଷ । ଶ୍ରୀ ସାହୁ ବହୁ ଶ୍ରମ ଓ ନିଷ୍ଠାର ସହିତ ଗବେଷଣା କରି ଯାହା ଏହି ଗ୍ରନ୍ଥରେ ଲେଖି-ଅଛନ୍ତି, ତାହା ଅବଶ୍ୟ ଲୋକଙ୍କୁ ଜୈନଧର୍ମ ବିଷୟରେ ଉତ୍ତରୋତ୍ତର ଗବେଷଣା କରାଇବ, ଏହା ସୁନିଶ୍ଚିତ ।

ସାହୁ ମହାଶୟ ଏ ଗ୍ରନ୍ଥ ଲେଖି ନିଜକୁ ଧନ୍ୟ କରିଅଛନ୍ତି ।"

—(ମୋ ବାଉବୁଲା ଜୀବନ ପୃ ୨୯-୩୦ ପରିଶିଷ୍ଟ)

ଖାଲି ଜୈନଧର୍ମ ସମ୍ପର୍କରେ ନୁହେଁ, ଆଦିବାସୀଙ୍କ ସମ୍ପର୍କରେ ମଧ୍ୟ ଲକ୍ଷ୍ମୀନାରାୟଣଙ୍କ ଗବେଷଣା ଉଲ୍ଲେଖଯୋଗ୍ୟ । କୋରାପୁଟର ଜୟପୁରଠାରେ ସେ ତିନିବର୍ଷକାଳ ରହି ଘନଜଙ୍ଗଲରେ ପଶି ଆଦିବାସୀଙ୍କ ସାଙ୍ଗରେ ଆଦିବାସୀ ହୋଇ ତାଙ୍କ ଅବସ୍ଥା ଅନୁଧ୍ୟାନ କରିଛନ୍ତି । ପରଜା, ଗଦବା, ସଉର, କନ୍ଧ, ସାନ୍ତାଳ, ମୁଣ୍ଡା, କୋୟା, ଗଣ୍ଡ, ରେଣା, ଭୋଥାରମାନଙ୍କ ସମ୍ପର୍କରେ—ତାଙ୍କ ଚାଲିଚଳନ, ଖାଦ୍ୟପେୟ, ମେଳା ମହୋତ୍ସବ, ରୋଗବ୍ୟାଧି, ତାଙ୍କ ଦୁଃଖ, ଦାରିଦ୍ର୍ୟ, ଅଭାବ, ଉତ୍ପୀଡ଼ନ ସମ୍ପର୍କରେ ସେ ପ୍ରତ୍ୟକ୍ଷ ଜ୍ଞାନ ଅର୍ଜନ କରି ତାକୁ ଗବେଷଣାମୂଳକ ପୁସ୍ତକ ଆକାରରେ ପ୍ରକାଶ କରିଛନ୍ତି ଓଡ଼ିଆରେ, ଇଂରେଜିରେ—ପ୍ରବନ୍ଧ ଆକାରରେ, କବିତା ଆକାରରେ । ସେଇ ପୁସ୍ତକଗୁଡ଼ିକ ହେଲା—The Hill Tribes of Jeypore, Springs of the Soul, Songs of the Hill, The Fountain, ଦଣ୍ଡନାଟ (ପ୍ରତ୍ନତତ୍ତ୍ୱ), ଗାନ୍ଧର୍ବିକା ଶତଦଳ, ଦେବଙ୍କରି ଇତ୍ୟାଦି । ସେଥି ମଧ୍ୟରୁ The Hill Tribess of Jeypore 'ଲଣ୍ଡନର ଅକ୍ସଫୋର୍ଡ ବିଶ୍ୱବିଦ୍ୟାଳୟରେ ଆଦିବାସୀଙ୍କ ସମ୍ପର୍କରେ ଏକ ପ୍ରାମାଣିକ ଗ୍ରନ୍ଥ ରୂପେ ଅନୁମୋଦିତ ।

ଲୋକରତ୍ନ ଡକ୍ଟର କୁଞ୍ଜବିହାରୀ ଦାଶ ଏହି ଗ୍ରନ୍ଥକୁ ଆଲୋଚନା କରି କହନ୍ତି—"ଗବେଷକ ଶ୍ରୀ ଲକ୍ଷ୍ମୀନାରାୟଣ ସାହୁ କୋରାପୁଟର ଆଦିବାସୀମାନଙ୍କ

ବିକଟ ଦାରିଦ୍ର୍ୟ, ରୋଗବ୍ୟାଧି, କୁସଂସ୍କାର, ଅନ୍ଧବିଶ୍ୱାସ, ସେମାନଙ୍କ ମେଳା ମହୋତ୍ସବ, ମଦ୍ୟପାନ ଓ ନୃତ୍ୟ, ସେମାନଙ୍କ ମଧ୍ୟରେ ପ୍ରଚଳିତ ଲୋକ କାହାଣୀର ସୁନ୍ଦର ନମୁନାମାନ ଏହି ପୁସ୍ତକରେ ଦେଇଅଛନ୍ତି । ସେମାନଙ୍କର କେତେକ ଗୀତର ଇଂରେଜୀ ଅନୁବାଦ ଚିତ୍ତାକର୍ଷକ ହୋଇଅଛି । ସେମାନଙ୍କ କନ୍ଦା, କରବା, ପିଠାଳ, ଟାଙ୍କୁ ଆଦି ଖାଦ୍ୟ, ଲନ୍ଧା, ମଦ୍ୟପାନ, ସେମାନଙ୍କ ଗବସ୍ମମ୍ (ଗୋଲୁ ରୋଗର ଦେବତା), ରୋଗୋସ୍ମମ (ବସନ୍ତ ରୋଗର ଦେବତା), କୁଲ୍ସୁମ୍ (କୁଷ୍ଠର ଦେବତା), ମଗୁସ୍ମମ୍ (ମୃତ୍ୟୁ ଦେବତା), ରଥୁସ୍ମମ୍ (ଶିକାର ଦେବତା), ଡୁଗ୍ପୁ କୁର୍ଣ୍ଣାସ୍ମମ୍ (ଭିକ୍ଷାର ଦେବତା), ଯୋ ଯୋ ବୋ ଯୋସ୍ମମ୍ (ଧାନବୁଣାର ଦେବତା), ଓୟମ୍ସ୍ମମ୍ (ଭତ୍ତାପର ଦେବତା) ପ୍ରଭୃତି ବହୁ ଦେବତା ଆଦିବାସୀଙ୍କ ସାହିତ୍ୟ, ସେମାନଙ୍କ ଜନ୍ମାଦି ସଂସ୍କାର ଓ ମୃତାହର୍କିଯାର ପୁଙ୍ଖାନୁପୁଙ୍ଖ ବିବରଣୀ ଏହି ପୁସ୍ତକରେ ଦିଆଯାଇଅଛି । ତାଙ୍କ ସଂଗୃହୀତ ମେରିଆପୂଜା (ନରବଳି)ର ବିଶଦ ବିବରଣୀ ମଧ୍ୟ ଏଥିରେ ସନ୍ନିବେଶିତ । (ଲକ୍ଷ୍ମୀନାରାୟଣଙ୍କ ସ୍ମରଣିକା)

"ଗନ୍ଧର୍ବିକା ଶତଦଳ"ରେ କୋରାପୁଟ ଆଦିବାସୀଙ୍କର କେତେଗୁଡ଼ିଏ ଗୀତ ସଂଗୃହୀତ ଓ ଅନୂଦିତ ହୋଇଅଛି । ଏହା ମୁଖ୍ୟତଃ ବିବାହ ସମ୍ପର୍କୀୟ । ସେମାନଙ୍କ ଚାଲିଚଳନ ରୀତିନୀତିର ବିବରଣୀ ସହ ସେମାନଙ୍କ ତୀବ୍ର ଜୀବନ ସଂଗ୍ରାମ ଓ ଗହନ ମନର ଗୋପନବାର୍ତ୍ତା ଏଥିରେ ସୁନ୍ଦର ଭାବରେ ରୂପାୟିତ ହୋଇଅଛି ।

'ଦଣ୍ଡନାଟ' ସମ୍ପର୍କରେ ପ୍ରଫେସର ଡକ୍ଟର କୁଞ୍ଜବିହାରୀ ଦାଶ ମୁକ୍ତ କଣ୍ଠରେ ସ୍ୱୀକାର କରିଛନ୍ତି ଯେ ଲକ୍ଷ୍ମୀନାରାୟଣ ଜଣେ ଗବେଷକ । ଲୋକ ସାହିତ୍ୟରେ ତାଙ୍କ ଗବେଷଣାର ସ୍ପଷ୍ଟ ମୁଦ୍ରା ଅଙ୍କିତ ହୋଇଅଛି । ତାଙ୍କ 'ଦଣ୍ଡନାଟ' ଗୋଟିଏ ମୌଳିକ ଗବେଷଣା-ମୂଳକ ପ୍ରବନ୍ଧ । ମୁଖ୍ୟତଃ ଏହାକୁ ଅବଲମ୍ବନ କରି ମୁଁ ମୋ ଥେସିସ୍‌ରେ ପ୍ରକାଶ ପାଇଥିବା ଦଣ୍ଡନାଟ, ପ୍ରବନ୍ଧଟି ଲେଖିଛି । ଗବେଷକ ଶ୍ରୀ ସାହୁ ଦଣ୍ଡନାଟର ଉତ୍ପତ୍ତି, କାମନାଘର, କାମନାଘଟ, ନାଟ୍ୟର ପାତ୍ରପାତ୍ରୀ ଓ ଦେବଦେବୀଙ୍କ ବିବରଣୀ, ପାଟଭୋକ୍ତା, ଚନ୍ଦନିଆ ପାତ୍ର,

ଧୂପିଆ ପାତ୍ର, ବେତୁଆପାତ୍ର, ଦାରୁକାଠିଆ ପାତ୍ର, ଗୋବରିଆ ପାତ୍ର, ନୀଳିଆ ପାତ୍ର ଓ ଦଣ୍ଡସ୍ୱାମୀଙ୍କର ବିସ୍ତାର ବର୍ଣ୍ଣନା ଦେଇଅଛନ୍ତି । 'ଦଣ୍ଡନାଟ' ଓଡ଼ିଶାରେ ବ୍ୟାପକ ଭାବରେ ପ୍ରଚଳିତ; ଦଣ୍ଡର ଠାକୁରାଣୀ ଦଣ୍ଡୀ ମହାଦେବୀ । ଦଣ୍ଡ ଶିବ ପାର୍ବତୀଙ୍କ ପ୍ରତୀକ ବେଭ । ଦଣ୍ଡୁଆମାନେ ଉକ୍ତ ଦେବୀଙ୍କ ତୁଷ୍ଟ କରିବାଲାଗି ବହୁକାୟ ସାଧନା କରିଥାଆନ୍ତି ।

'ଦଣ୍ଡନାଟ'ରୁ ଶ୍ରୀ ସାହୁଙ୍କ ଗଭୀର ଅଧ୍ୟବସାୟ, ନିଷ୍ଠା, ମୌଳିକ ବିଷୟ ସଂଗ୍ରହ ପ୍ରଚେଷ୍ଟା ଓ ତାକୁ ବୈଜ୍ଞାନିକ ରୀତିରେ ସଜେଇ ଲେଖି ପାରିବା ଦକ୍ଷତାର ପରିଚୟ ମିଳେ । ଓଡ଼ିଆ ଲୋକ ସଂସ୍କୃତିର ଏହା ଏକ ଦିଗ୍‌ଦର୍ଶକ ଖୁଣ୍ଟି ” (ଲକ୍ଷ୍ମୀନାରାୟଣ ସ୍ମରଣିକା)

## ତାଙ୍କ ଗଳ୍ପ ଓ ଉପନ୍ୟାସ :

ଉପନ୍ୟାସ ଓ ଗଳ୍ପ ଆକାରରେ ବୀଣା, ସ୍ୱର୍ଣ୍ଣଲତା, ଅଥାଳନ, କଣ୍ଟ୍ରୋଲ୍ ରୁମ୍, ଆରତି, ମୁହୂର୍ତ୍ତ, ଏକାକୀ, ସନ୍ଦେହ, ବହୁରୂପ, ବିବାହିତା.........କଳଙ୍କିନୀ, ପ୍ରଭବ ଶୀର୍ଷକ ରଚନାବଳୀ ସେ ସମାଜକୁ ଦେଇ ଯାଇଛନ୍ତି, ମାତ୍ର ଏହା ତାଙ୍କ ପ୍ରବନ୍ଧ ଓ ରମ୍ୟରଚନା ଭଳି ଏତେ ଉଚ୍ଚକୋଟୀର ବୋଲି ମନେ ହୁଏ ନାହିଁ, ଯଦିବା ଏଥିରେ ଅନେକଗୁଡ଼ିଏ ସାରଗର୍ଭକ ତଥ୍ୟ ସନ୍ନିବେଶିତ ହୋଇଅଛି । ଜଣେ ଚିନ୍ତାଶୀଳ ଦେଶସେବକ ଓ ନିଷ୍ଠାପର କର୍ମୀର ମନର ପ୍ରତିକ୍ରିୟା, କାମନା, ବାସନା, ଅନ୍ୟାୟ ଓ ଅନାଗ୍ରହ ବିରୁଦ୍ଧରେ ତୀବ୍ର କ୍ରନ୍ଦନ ଏଥିରେ ରୂପ ପାଇଛି । ତାଙ୍କ ବୀଣା, ବହୁରୂପ, କ୍ଷଣିକା ଆଦି ବହୁ ପରିମାଣରେ ତାଙ୍କ ଜୀବନର ବାର୍ତ୍ତା ବହନ କରିଛି, "ମୁଁ ଓଡ଼ିଆ" ଓ "କଳିଙ୍ଗକୁମାରୀ"—ଦୁଇଟି କ୍ଷୁଦ୍ର ଗ୍ରନ୍ଥରେ ଲକ୍ଷ୍ମୀନାରାୟଣ ଯେପରି ଓଡ଼ିଆ ଜାତିର ବିଗଟତ୍ତ୍ୱର ଚିତ୍ର ବର୍ଣ୍ଣନା କରିଛନ୍ତି, ତାହାର ତୁଳନା ନାହିଁ । ଯେ କୌଣସି ଓଡ଼ିଆ ତାହା ପାଠ କଲେ ଗର୍ବିତ ହେବ ଏବଂ ସେ ବୁଝିପାରିବ ଯେ ସେ କେଉଁ ମହାନ୍ ଜାତିର ଅଙ୍କୁର ।

ଭାରତର ବିଭିନ୍ନ ସମସ୍ୟା ତଥା ମାନବ ଜାତିର ବିଭିନ୍ନ ସମସ୍ୟା ଉପରେ ବିଶ୍ୱକବି ରବୀନ୍ଦ୍ରନାଥ ଓ ଜାତିର ଜନକ ମହାତ୍ମା ଗାନ୍ଧୀ ଯେଉଁ

ପ୍ରାଣବନ୍ତ ଆଲୋଚନା ଓ ରଚନାମାନ କରୁଥିଲେ ତାହା ଲକ୍ଷ୍ମୀନାରାୟଣଙ୍କୁ ବିଶେଷ ଭାବେ ପ୍ରଭାବିତ କରିଥିଲା ।

ତାଙ୍କ 'ବୀଣା' ଉପନ୍ୟାସ ସମାଲୋଚନା କରି 'ଡଗର' ଲେଖିଥିଲେ ନଭେମ୍ବର, ୧୯୫୨ ସଂଖ୍ୟାରେ–

"ଶ୍ରୀଯୁକ୍ତ ସାହୁଙ୍କର 'ବୀଣା' ପ୍ରକୃତରେ ଉପନ୍ୟାସ ନୁହେଁ, ଅନେକ ଅଂଶରେ ଆତ୍ମକଥା ମନେହୁଏ । କିନ୍ତୁ ଲେଖାରେ ସାହିତ୍ୟିକ ଲକ୍ଷ୍ମୀନାରାୟଣ ବଡ଼ ଜୀବନ୍ତ । ତାଙ୍କର କବି ପ୍ରତିଭାର ପରିଚୟ ଦେବାକୁ ଏହି ଖଣ୍ଡିକ ପୁସ୍ତକହିଁ ଯଥେଷ୍ଟ ହେବ । ଭାବ ମୁକ୍ତ, ଭାଷା ସଂଯତ ଏବଂ ଭଙ୍ଗୀ ନିଷ୍ଠିତ– ଏହାହିଁ ଗଳ୍ପ ଉପନ୍ୟାସର ମାପକାଠି ।

'ବହୁରୂପ' ପଢ଼ି ସେହି 'ଡ଼ଗର' ଏପ୍ରେଲ,୧୯୫୫ ସଂଖ୍ୟାରେ ଲେଖିଥିଲେ–

"ଏହା ଗଳ୍ପ ନୁହେଁ–ବରଂ ଜୀବନ କଥା । ଉପନ୍ୟାସ ନୁହେଁ– ଉପଦେଶ । ସାହୁଜୀ ଏଥିରେ ନାୟକ ନୁହଁନ୍ତି, ଅଭିନେତା–ସ୍ୱରୂପୀ ନୁହଁନ୍ତି, ସ୍ୱରୂପୀ ଓ ବହୁରୂପୀ । ଏହା ଚିତ୍ର ନୁହେଁ, ବିଚିତ୍ର । ଭାବ ନୁହେଁ–ବିଭାବ । ଏହା ସାହିତ୍ୟର କୌଣସି ପ୍ରକାର ନୁହେଁ–କୌଣସି ପ୍ରାକ୍‌କାରରେ ଆବଦ୍ଧ ନୁହେଁ–ଏହା ବିକାର ମଧ୍ୟ ନୁହେଁ–ଏହା ଏକ ନିର୍ଭୀକ ସ୍ୱୀକାର ଉକ୍ତି ।

ସାହିତ୍ୟରେ ଏଭଳି ଲେଖାର ସ୍ଥାନ କେଉଁଠି, ତାହା ନିର୍ଣ୍ଣୟ କରିବାର ଶକ୍ତି ଯେପରି ସହଜରେ ପରାଜୟ ମାନେ ।"

ତାଙ୍କ ଜୀବନୀ ସାହିତ୍ୟ :

ଓଡ଼ିଶାରେ ତଥା ଭାରତରେ ଯେତେବେଳେ ଯେଉଁ ଧର୍ମ, ଆନ୍ଦୋଳନ, ଅନୁଷ୍ଠାନ, ନୂତନ ଚିନ୍ତାଧାରା, ବା ମହାତ୍ମା ମହାପୁରୁଷ ବା କବି, ଦାର୍ଶନିକ, ବୈଜ୍ଞାନିକଙ୍କର ଆବିର୍ଭାବ ଘଟିଛି, ଲକ୍ଷ୍ମୀନାରାୟଣ ସେମାନଙ୍କୁ ସସମ୍ମାନେ ଆବାହନ କରି ଓଡ଼ିଆ ଜନସାଧାରଣଙ୍କ ଆଗକୁ ଆଣିବାରେ ପ୍ରଥମ । ତାଙ୍କ ସମ୍ପର୍କରେ କେହି କିଛି ଜାଣିବା ଆଗରୁ ସେ ବହୁତ ଅନୁଧ୍ୟାନ କରି, ଅନୁଶୀଳନ କରି, ଅଧ୍ୟୟନ କରି ବିଷୟବସ୍ତୁ ସଂଗ୍ରହ

କରି ଗୋଟିଏ ପୁସ୍ତକ ଲେଖି ପକାନ୍ତି । କେବଳ ଉଦ୍ଦେଶ୍ୟ, ଓଡ଼ିଶାରେ ଓଡ଼ିଆ ଜନସାଧାରଣଙ୍କ ଭିତରେ ଏ 'ଚିନ୍ତାଧାରା ଖେଳୁ । ସେମାନେ କୂପ ମଣ୍ଡୁକ ହୋଇ ନ ରହନ୍ତୁ । ସେ ପ୍ରତ୍ୟେକ ଧର୍ମ ପାଇଁ, ପ୍ରତ୍ୟେକ ବିଶିଷ୍ଟ ବ୍ୟକ୍ତିଙ୍କ ପାଇଁ କେତେ ଯେ କବିତା, ପ୍ରବନ୍ଧ, ସମାଲୋଚନା, ତଥ୍ୟ–ସମ୍ବଳିତ ପୁସ୍ତକ ଆଦି ଲେଖିଛନ୍ତି ତା'ର କ'ଣ ଇୟତ୍ତା ଅଛି ?

ଶିଖ୍ ଧର୍ମ ପାଇଁ–ଗୁରୁ ଗୋବିନ୍ଦ ସିଂହ, କାଳିଆ ବୁଦାରେ ଗୁରୁଦ୍ୱାରର ସୃଷ୍ଟି ଓ ବୈଶିଷ୍ଟ୍ୟ, ସର୍ଦ୍ଦାର ହୁକୁମ ସିଂହ–ଶିଖ୍‌ମାନଙ୍କୁ ପ୍ରଣାମ । (ଇଂରେଜିରେ) ;
ରାଷ୍ଟ୍ରୀୟ ସ୍ୱୟଂସେବକ ପାଇଁ ଶ୍ରୀଗୁରୁଜୀ ; ଇସ୍‌ଲାମ୍ ଧର୍ମ ପାଇଁ ମହମ୍ମଦ, ହିନ୍ଦୁ–ମୁସଲମାନ, କୋରାନ ପଢ଼ିସାରିବା ପରେ (ଇଂରେଜିରେ) ; ଖ୍ରୀଷ୍ଟ ଧର୍ମ ପାଇଁ ଚର୍ଚ୍ଚ (ଇଂରେଜିରେ) ; କ୍ରାନ୍ତି ଓ ଶାନ୍ତି ପାଇଁ ଗୋଖଲେ, ତିଳକ ; ଷ୍ଟାଲିନ୍, ଗାନ୍ଧୀ ; ଅଲେଖ ଧର୍ମ ପାଇଁ ମହିମାଧର୍ମର ସାରକଥା, ଅରକ୍ଷିତ ଦାସ (ଇଂରେଜିରେ) ; ବୌଦ୍ଧଧର୍ମ ପାଇଁ ବୌଦ୍ଧଭିକ୍ଷୁ ଆନନ୍ଦ ; ବ୍ରହ୍ମବିଦ୍ୟା ସମ୍ପର୍କରେ ବ୍ରହ୍ମବିଦ୍ୟା, ଗୁପ୍ତବିଦ୍ୟା. ବ୍ରହ୍ମବିଦ୍ୟା ପଥେ ; ଅସହଯୋଗ ଆନ୍ଦୋଳନ ପାଇଁ କର୍ମୀ ଗୋପବନ୍ଧୁ, ଋଷିପ୍ରାଣ ଏକ୍‌ରାମ୍, ସେବକ, ଅଟଳବିହାରୀ, ମହାତପୀ ମହତାବ୍ ; ଭାରତ ସେବକ ସମିତି ପାଇଁ କର୍ମବୀର ଗୋଖଲେ ଭାରତ ସେବକ ସମିତି ରାଇଟ ଅନରେବଲ୍ ଶ୍ରୀନିବାସ ଶାସ୍ତ୍ରୀ (ଇଂରେଜିରେ) ; ଭୂତପ୍ରେତଙ୍କ ଚର୍ଚ୍ଚାରେ ଅଜଣା ରାଇଜ କଥା–୧ମ ଭାଗ, ଅଜଣା ରାଇଜ କଥା–୨ୟ ଭାଗ ; ଶ୍ୱାସରୋଗ ପାଇଁ କୁଷ୍ଠରୋଗ ପାଇଁ ଶ୍ୱାସାରି କୁଷ୍ଠ (ଇଂରେଜିରେ) ;
ବିଶିଷ୍ଟ ଲୋକଙ୍କ ଜୀବନୀ ସମ୍ପର୍କରେ–ଶ୍ରୀ ଅରବିନ୍ଦ, ସୁଭାଷ ବୋଷ, ପଟ୍ଟାଭି ସୀତାରାମେୟା ; ବି କେ. ଭଣ୍ଡାରି, ଏସ୍. ଆର୍. ଭେଙ୍କଟରମଣି, ଘନଶ୍ୟାମ ଦାସ ବିରଳା, କାଜି ନଜରୁଲ୍ ଇସଲାମ୍, ବିକ୍ରମ ଦେବ, ଡକ୍ଟର ରଘୁବୀର ଜହରଲାଲ ନେହେରୁ, ମହାତ୍ମାଗାନ୍ଧୀଙ୍କ ମୃତ୍ୟୁରେ, ଜଳନ୍ଧର ଦେବ, ସରୋଜିନୀ ନାଇଡୁ, ସୀମାନ୍ତ ଗାନ୍ଧୀ, ସୁରେନ୍ଦ୍ର ନାଥ ବାନର୍ଜି, ଡ଼କ୍ଟର ବିଶ୍ୱନାଥ ସାହୁ, ଡକ୍ଟର କରୁଣାକର କର, ରତ୍ନାକର ପତି, ଉପେନ୍ଦ୍ର ଭଞ୍ଜ, ଭଗବତୀ ପାଣିଗ୍ରାହୀ ।

ଓଡ଼ିଆରେ ଜୀବନୀ ଗ୍ରନ୍ଥର ଅଭାବ ଉପଲବ୍‌ଧି କରି ସେ–
ଋଷି ଦୟାନନ୍ଦ, ରାଜା ରାମମୋହନ ରାୟ, ବିଶ୍ୱକବି ରବୀନ୍ଦ୍ରନାଥ, ଫେର୍ଦୌସୀ, ଗୁରୁଜୀ, ଗୁରୁଗୋବିନ୍ଦ ସିଂହ, କବିବର ରାଧାନାଥ, ଡକ୍ଟର ପ୍ରାଣକୃଷ୍ଣ ପରିଜା, ଅପର୍ଣ୍ଣା ପାଣିଗ୍ରାହୀ, କବି ଗୋଦାବରୀଶ ମିଶ୍ର, ନାରୀକବି ମାଧବୀ, ପ୍ୟାରୀମୋହନ, କାନ୍ତକବି ଲକ୍ଷ୍ମୀକାନ୍ତ, କାଳିନ୍ଦୀ କମଳା ବା କାଳିଆ ସୁନାରୀ, ଇତ୍ୟାଦି ।

ଗୁଣ ଚିହ୍ନେ ଗୁଣିଆ । ସୁନା ଚିହ୍ନେ ବଣିଆ । ଲକ୍ଷ୍ମୀନାରାୟଣ ଚିହ୍ନର ଗ୍ରାହକ । ସେ ନିଜ ହାତରେ ଗଢ଼ିଥିଲେ ଅନେକ ଜୀବନ । ଯାହାଠାରେ ଟିକିଏ ପ୍ରତିଭା ଦେଖିଲେ, ଶତ ଚେଷ୍ଟା, ଶତ ଯତ୍ନରେ ସେ ସୁପ୍ତ ଶକ୍ତିକୁ ଜାଗ୍ରତ କରାଇବାରେ ସେ ଥିଲେ ଜଣେ ବଡ଼ ଉଦ୍ୟମୀ । ସାହିତ୍ୟ, ସଙ୍ଗୀତ, କଳା, ରାଜନୀତି, ବକ୍ତୃତା–ବିଭିନ୍ନ ଦିଗରେ ସେ ବିକାଶୋନ୍ମୁଖୀ ପ୍ରତିଭାକୁ ପୂର୍ଣ୍ଣ ବିକାଶ କରାଇବାରେ ଲାଗି ପଡ଼ୁଥିଲେ । ଠିକ୍ ସେହିପରି ସୁରଭିତ କୁସୁମରୁ ସଂଗ୍ରହ କରୁଥିଲେ ମହୁ । ଯେଉଁଠି ଭଲ ଗୁଣ ଦେଖୁଥିଲେ, ଯାହା ଭିତରେ ମହକ ଦେଖୁଥିଲେ, ତାକୁ ସେ ପ୍ରାଣଖୋଲି ପ୍ରଶଂସା ଢ଼ାଳୁଥିଲେ । ତା'ଠାରୁ ଶିଖୁଥିଲେ, ଅନ୍ୟକୁ ଶିଖାଉଥିଲେ ଓ ତା' ଜୀବନଗାଥା ସମାଧି ରଖୁଥିଲେ ଭବିଷ୍ୟତ ବଂଶଧରଙ୍କ ପାଇଁ । ଏହା ତାଙ୍କର ସମ୍ପୂର୍ଣ୍ଣ ନିଜସ୍ୱ । ଏହା ପୁଣି ଗବେଷଣାତ୍ମକ ଓ ତୁଳନାତ୍ମକ ।

ତାଙ୍କ ଆତ୍ମ ଜୀବନୀ :

ଲକ୍ଷ୍ମୀନାରାୟଣଙ୍କ ଆତ୍ମଜୀବନୀ 'ମୋ ବାରବୁଲା ଜୀବନ' ଓଡ଼ିଆ ସାହିତ୍ୟ ଗନ୍ତାଘରରେ ଏକ ଅମୂଲ୍ୟ ରତ୍ନ । ତାଙ୍କର ସମଗ୍ର ସାହିତ୍ୟ ଉଜୁଡ଼ିଗଲେ ବି ଏହି ଖଣ୍ଡିଏ ପୁସ୍ତକ ତାଙ୍କ ସମସ୍ତ ସାହିତ୍ୟକ ପ୍ରତିଭା, କବିତ୍ୱ, ହୃଦୟବତ୍ତା, କର୍ମ କୁଶଳତା ଏବଂ ସମଗ୍ର ଜୀବନର ନିର୍ଯ୍ୟାସ ଗୋଟିଏ ଝଲକରେ ଆଣି ଥୋଇବ ଓଡ଼ିଆ ଜାତି ଆଗରେ ।

ଜଣେ ଇଂରେଜଲେଖକ କହିଥିଲେ–"If you touch my book, you touch a living man" (ତମେ ମୋ ବହିକୁ ଛୁଉଁଛ ମାନେ ତମେ ଜଣେ ଜୀବନ୍ତ ମଣିଷକୁ ଛୁଉଁଛ ।) ସେହି କଥା ଖୋଜ ଅଣାରୁ

ଷୋଳ ଅଣା ପ୍ରଯୁଜ୍ୟ ଲକ୍ଷ୍ମୀନାରାୟଣଙ୍କ "ମୋ ବାରବୁଲା ଜୀବନ" ସହିତ ।

ଲର୍ଡ ଟେନିସନ୍‌ଙ୍କ ଲେଖାଭଳି ଏହା Pictorial, ପଢିଲାମାତ୍ରେ ଆଖି ଆଗରେ ଗୋଟିଏ ଛବି ଆଙ୍କି ହୋଇଯାଏ । ବହିର ଯେ କୌଣସି ପୃଷ୍ଠା ଯେ କୌଣସି ଧାଡ଼ି ପଢିଦେଲେ ଲକ୍ଷ୍ମୀନାରାୟଣଙ୍କ ଚେହେରା, ରୂପ, ହସ, କଥା, ଜ୍ଞାନ, କ୍ରୋଧ, ଆତ୍ମୀୟତା, ପ୍ରାଣପ୍ରାଚୁର୍ଯ୍ୟ, ଜୀବନ-ତରଙ୍ଗର ପ୍ରତିଟି ବୁଦ୍‌ବୁଦ୍ ଯେମିତି ନାଚିଉଠେ, ଭାସି ଉଠେ ଆମ ଆଗରେ । ସେ ଗୁଡ଼ି ଉଡ଼ଉଛନ୍ତି, ପାରା ଉଡଉଛନ୍ତି, ଏମ୍. ଏ ପରୀକ୍ଷା ଦେଉଛନ୍ତି, ପାର୍ଲିଆମେଣ୍ଟରେ ରେକ୍‌ଠୋକ୍ ବକ୍ତୃତା ଦେଉଛନ୍ତି । ଗୋଟାଏ ନଡ଼ା ମୁଣ୍ଡାଇ କଟକ ସହରର ଧୂଳିଆ ରାସ୍ତାରେ ଚାଲିଛନ୍ତି—ଆମେ ସାକ୍ଷ୍ୟ ଲକ୍ଷ୍ୟପ୍ରତ୍ୟକ୍ଷରେ ଦେଖିପାରୁ, ଆମେ ଗୋଟିପଣେ କୁଣ୍ଢେଇ ଧରୁ ଲକ୍ଷ୍ମୀନାରାୟଣଙ୍କୁ, ଆମେ ଯୋଡ଼ ହସ୍ତରେ ପ୍ରଣାମ-କରୁ । ସେ ସାଦର ସମ୍ଭାଷଣ କରନ୍ତି ।

ଏଇ "ମୋ ବାରବୁଲା ଜୀବନ"ର ମହତ୍ତ୍ୱ ଓ ଗାରିମା ।

ଲକ୍ଷ୍ମୀନାରାୟଣ କୈଶୋରରେ, ଯୌବନରେ ଥିଲେ ଅତି ଚପଳ, ଚଞ୍ଚଳ, ଉଦ୍ଦାମ, ଉଚ୍ଛୃଙ୍ଖଳ । କିନ୍ତୁ ତେଜ ତ ଆଉ ସବୁଦିନେ ରହନ୍ତା ନାହିଁ । କ୍ରମେ ମଉଳିଲା । ଧୀରେଧୀରେ ସେ ହୋଇ ଆସିଲେ ଶିଥିଳ, ଅବଶ । ମନ ଭାଙ୍ଗିପଡ଼ି ନ ଥିଲେ ବି ଦେହ ଦିନକୁଦିନ ଭାଙ୍ଗଭାଙ୍ଗ ଆସିଲା । ଏତିକିବେଳେ ଏ ପଙ୍ଗୁ ଲକ୍ଷ୍ମୀନାରାୟଣଙ୍କୁ ଯେ ପ୍ରେରଣା ଦେଇଥିଲେ—ଓଠର କଅଁଳ ହସ ଦେଇ ଏ 'ନିଜ କାହାଣୀ' ଲେଖିବାକୁ ରାଜି କରେଇ ଥିଲେ, ସେ ହେଉଛନ୍ତି 'ଡଗର' ସମ୍ପାଦକ ଶ୍ରୀ ନିତ୍ୟାନନ୍ଦ ମହାପାତ୍ର ।

ବେଶ୍ ବୃଦ୍ଧ ହୋଇଥିଲେ ଲକ୍ଷ୍ମୀନାରାୟଣ । ସତୁରି ବର୍ଷ ବୟସ । ଭୟଙ୍କର ଶ୍ୱାସ । ରାତିରେ ଶୋଇପାରନ୍ତି ନାହିଁ, ବସିପାରନ୍ତି ନାହିଁ । ତକିଆକୁ ଭରଦେଇ, ତଳକୁ ମୁଣ୍ଡ ପୋତି ପୋତି ଅତୀତ ଦିନର ମଧୁ ସମ୍ଭାର-ଗୁଡ଼ିକ ଭଳିଯାଆନ୍ତି । ବେଳେବେଳେ ଆଲୁଅରେ, ବେଳେବେଳେ ଅନ୍ଧାରରେ ହଜିଯାଆନ୍ତି । ସକାଳୁ ମାଲ୍ୟାଣୀ ଝିଅ କାକର କୋଳରୁ ଗଙ୍ଗଶିଉଳି ଫୁଲ ତୋଳି ନେଲାଭଳି ବି ନିତ୍ୟାନନ୍ଦ ଆସି ସାଉଁଟି ନିଅନ୍ତି ସେଇ ଅନାବନା

ଲେଖା । ସେଇ ଅନାବନା ଲେଖାହିଁ ଏହି ପୁସ୍ତକ—'ମୋ ବାରବୁଲା ଜୀବନ' । ଶ୍ରୀ ନିତ୍ୟାନନ୍ଦଙ୍କୁ ଏ ଜାତି ଶତକୋଟି ପ୍ରଣାମ ନ ଜଣାଇଲେ ଏ ଜାତି କୃତଘ୍ନ ହୋଇଯିବ । ଶ୍ରୀ ନିତ୍ୟାନନ୍ଦ ହିଁ ଲକ୍ଷ୍ମୀନାରାୟଣଙ୍କୁ ଆଜିଯାଏ ରଖିଛନ୍ତି ଜୀବନ୍ତ, ସଚଳ, ସଜୀବ ଓ ହସହସ । ନିତ୍ୟାନନ୍ଦ ନ ଥିଲେ ଆଉ ନିତ୍ୟ ଆନନ୍ଦ ନ ଥାନ୍ତା—ନିତ୍ୟ ଲକ୍ଷ୍ମୀନାରାୟଣ ପୂଜା ନ ଥାନ୍ତା । ଲକ୍ଷ୍ମୀନାରାୟଣ ବହୁ ଦିନୁ ପୋଡ଼ି ପାଉଁଶ ହୋଇ ଯାଆନ୍ତେଣି ସତୀଚଉରା ମାଟିରେ ।

ଭାଷା ଭାବ ଓ ପ୍ରକାଶଭଙ୍ଗୀ ଦୃଷ୍ଟିରୁ 'ମୋ ବାରବୁଲା ଜୀବନ' ଲକ୍ଷ୍ମୀ-ନାରାୟଣଙ୍କ ଏକାନ୍ତ ସାର୍ଥକ ସୃଷ୍ଟି । ଏହାରଭାଷା ଅତିସରଳ, କୋମଳ, ସାବଲୀଳ ଓ ସ୍ୱଚ୍ଛଳ । ଗିରି ନଦୀଭଳି ଏହା ବହି ଚାଲିଯାଏ କୌଣସି ବାଧାବନ୍ଧନ ନ ମାନି । ଯେ କୌଣସି ପାଠକ—ସେ ଉଚ୍ଚଶିକ୍ଷିତ ହେଉ ବା ଅର୍ଦ୍ଧଶିକ୍ଷିତ ହେଉ—ଏହାକୁ ଏକ ନିଶ୍ୱାସରେ ପଢ଼ିଯିବ ଏବଂ ନିଶ୍ଚେ ମୁଗ୍ଧ, ମୋହିତ, ଚକିତ ଓ ବିସ୍ମିତ ହେବ ଏଇ ଲୋକଟିର ସାଧନା ଦେଖି, ତପସ୍ୟା ଦେଖି ।

ଏ ଅଧ୍ୟାୟଟି ଶେଷ କରିବା ଆଗରୁ ଓଡ଼ିଆ ସାହିତ୍ୟର ଜଣେ ବିଶିଷ୍ଟ ରଥୀ, ଗବେଷକ ତଥା ସମାଲୋଚକ ଶ୍ରୀ ସୁରେନ୍ଦ୍ର ମହାନ୍ତିଙ୍କର ପଦେ-କଥା ନ କହିଲେ ଲକ୍ଷ୍ମୀନାରାୟଣଙ୍କ ପ୍ରତି ତଥା ସୁରେନ୍ଦ୍ର ବାବୁଙ୍କ ପ୍ରତି ଅନ୍ୟାୟ ହେବ । ସେ ଲକ୍ଷ୍ମୀନାରାୟଣଙ୍କ ସମଗ୍ର ରଚନାବଳୀ ପୁଙ୍ଖାନୁପୁଙ୍ଖ ଆଲୋଚନା କରି ତା ଉପରେ ଏକ ଯଥାର୍ଥ ଆଲୋକପାତ କରିଛନ୍ତି—

"ଲକ୍ଷ୍ମୀନାରାୟଣଙ୍କ ପ୍ରବନ୍ଧାବଳୀରେ ମନନଶୀଳତା, ଅଧ୍ୟୟନ ଓ ଅଧ୍ୟବସାୟର ସ୍ୱାକ୍ଷର ଯେପରି ସୁସ୍ପଷ୍ଟ, କବିତାରେ ସେହିପରି ଅନ୍ତର୍ନିହିତ ଭାବଗଙ୍ଗୀର ରହସ୍ୟବାଦୀ ସୌନ୍ଦର୍ଯ୍ୟ ଓ ଐଶ୍ୱର୍ଯ୍ୟ ଏକାନ୍ତ ଭାବରେ ଲକ୍ଷଣୀୟ । ଲକ୍ଷ୍ମୀନାରାୟଣଙ୍କ ରଚନାରେ ସ୍ୱତଃସ୍ଫୂର୍ତ୍ତ ପ୍ରକାଶଭଙ୍ଗୀର ସଜୀବତା ପରିପ୍ରକାଶରେ ରୀତିଗତ ଓ ଆଙ୍ଗିକଗତ ତ୍ରୁଟିର ଅପୂର୍ଣ୍ଣତାକୁ ପୂର୍ଣ୍ଣ କରି-ଦେଇଛି । ଏହାହିଁ ମଧ୍ୟ ଥିଲା ଲକ୍ଷ୍ମୀନାରାୟଣଙ୍କ ବ୍ୟକ୍ତିତ୍ୱ । ସେଥିପାଇଁ ଲକ୍ଷ୍ମୀନାରାୟଣଙ୍କ ସାହିତ୍ୟ ଅତି ସାର୍ଥକ ଭାବରେ ତାଙ୍କ ଜୀବନ ଓ ବ୍ୟକ୍ତିତ୍ୱର ପ୍ରତିନିଧିତ୍ୱ କରେ, ଏଥିରେ ସନ୍ଦେହ ନାହିଁ ।

(ଲକ୍ଷ୍ମୀନାରାୟଣ ଗ୍ରନ୍ଥାବଳୀ—ଭୂମିକା—୪)



॥ ନଅ ॥

# ଲକ୍ଷ୍ମୀନାରାୟଣଙ୍କ ବ୍ୟକ୍ତିତ୍ୱ, ମହତ୍ତ୍ୱ, ଓ ମହନୀୟତା

"A tall gaunt figure with a rugged craggy face, this one-time confectioner and schoolmaster came to be known among the Oriyas as one of the greatest social workers of his times. Ready to succour the sick the distraught, the dying the starving. trying to eradicate ignorance and poverty, he had trudged thousands of miles, visited innumerable villages in orissa and India during his life span of 73 years"

(ଦୀର୍ଘକାୟ, ଦୁର୍ବଳ, କର୍କଶ ମୁଖମଣ୍ଡଳଧାରୀ ଏହି ଲୋକଟି, ଯିଏ ଦିନେ ସାମାନ୍ୟ ମିଷ୍ଟାନ୍ନ–ବିକ୍ରେତା ଥିଲେ ଓ ସ୍କୁଲ ଶିକ୍ଷକ ଥିଲେ, ସିଏ ପରେ ଓଡ଼ିଶାର ଜଣେ ମହାନ୍ ସମାଜ-ସେବୀ ଭାବେ ସମଗ୍ର ଓଡ଼ିଆଙ୍କ ଭିତରେ ପରିଚିତ ହେଲେ । ରୋଗୀ, ମୁମୂର୍ଷୁ, କ୍ଷୁଧାର୍ତ୍ତ ଓ ନୈରାଶ୍ୟ-ଜର୍ଜରିତ ଲୋକଙ୍କର ସେବା କରିବା ପାଇଁ ଓ ଦାରିଦ୍ର୍ୟ ଓ ଅଜ୍ଞାନତାର ଅନ୍ଧକାର ଦୂର କରିବା ପାଇଁ ସେ ତାଙ୍କର ଏହି ଦୀର୍ଘ ୭୩ ବର୍ଷ ଜୀବନ କାଳ ମଧ୍ୟରେ ଓଡ଼ିଶା ତଥା ଭାରତର ହଜାର ହଜାର ମାଇଲ ପାଦରେ ଚାଲି ଚାଲି ଅତିକ୍ରମ କରିଛନ୍ତି ଓ ଅସଂଖ୍ୟ, ଅଗଣନ ଗ୍ରାମରେ ପ୍ରବେଶ କରି ଦୁଃଖୀ ଲୋକଙ୍କୁ ଆହା କହିଛନ୍ତି, ସାହା ହୋଇଛନ୍ତି ।)

ଓଡ଼ିଶାର ବିଶିଷ୍ଟ ସମାଜସେବୀ, ସ୍ୱଲେଖିକା, ସୁପଣ୍ଡିତା ଶ୍ରୀମତୀ ପଦ୍ମାଳୟା ଦାଶ ଏହି କଥା କହନ୍ତି 'Rare as Coelacanth'

ଶୀର୍ଷକ ଏକ ଲେଖା ୧୭. ୧. ୧୯୭୧ର ରବିବାର ହିନ୍ଦୁସ୍ଥାନ ଷ୍ଟାଣ୍ଡାର୍ଡରେ ଲେଖିଥିଲେ । ଲକ୍ଷ୍ମୀନାରାୟଣ ସାହୁ ବି ଥିଲେ ଏହିଭଳି ଜଣେ ଶୁଖା, ରୁଖା, ଗାଉଁଲି ମଣିଷ । ପାଠ ପଢ଼ି ବି ପଢ଼ି ନାହାଁନ୍ତି । ସହର ଆସି ବି ଆସି ନାହାଁନ୍ତି । ସମସ୍ତଙ୍କୁ ଆନନ୍ଦରେ, ପ୍ରେମରେ ଗଦ୍‌ଗଦ୍ ହୋଇ କୋଳ କରିବେ । ସେ ଗାଉଁଲି ହେଉ ସହରୀ ହେଉ, ପାଠୁଆ ହେଉ ମୂର୍ଖ ହେଉ ସମସ୍ତଙ୍କ ସାଙ୍ଗରେ ମିଶିଯିବେ ଗୋଟାପଣେ । ବିଦ୍ୟାର, ବୁଦ୍ଧିର, ଜ୍ଞାନର ଟିକିଏ ବି ଅହମିକା ନାହିଁ, ଅଭିମାନ ନାହିଁ । ସାରୁ ପରିବା । ଫୁଲକୋବି ସାଙ୍ଗରେ ମିଶିବେ, ସଜନା ଶାଗ ସାଙ୍ଗରେ ମିଶିବେ ।

ମାତ୍ର ଗୋଟିଏ ବାକ୍ୟରେ ସୁ-ସାହିତ୍ୟକ ଶ୍ରୀ ସୁରେନ୍ଦ୍ର ମହାନ୍ତି ତାଙ୍କର ଯେଉଁ ପରିଚୟ ଦେଇଥିଲେ, ତା' ଅଭିନବ, ସୁନ୍ଦର ।

"ଦୀର୍ଘକାୟ, ମୁଣ୍ଡିତ ବୌଦ୍ଧଭିକ୍ଷୁ ପରି ଦୁଇ ଆଖିର ସୁଦୂର ପ୍ରସାରୀ ଦୃଷ୍ଟିରେ ଏକ ସ୍ନିଗ୍ଧ ପ୍ରଶାନ୍ତି । ଅନ୍ତତଃ ଅର୍ଦ୍ଧ ଡଜନ ଏମ୍.ଏ ଡିଗ୍ରୀ ସତ୍ତ୍ୱେ ନିରଭିମାନ, ଶିଶୁସୁଲଭ ଜ୍ଞାନ ଆହରଣର ଅଦମ୍ୟ କୌତୂହଳରେ ଚିରଚଞ୍ଚଳ, ନିରାଡ଼ମ୍ବର, ନିରଳସ, ଉନ୍ନାସିକତା-ବର୍ଜିତ ଏକ ଗରିମାମୟ ଗ୍ରାମ୍ୟମୂର୍ତ୍ତି; ବନ୍ୟା-ପ୍ରପୀଡ଼ିତ ଗ୍ରାମାଞ୍ଚଳର ଆର୍ତ୍ତ ଓ ପୀଡ଼ିତର ରୋଗଶଯ୍ୟା ପାଖରେ, ରାଜନୈତିକ ମଞ୍ଚରେ, ବିଦଗ୍ଧ ସାହିତ୍ୟ-ସମାଜରେ, ସଙ୍ଗୀତ ଉତ୍ସବରେ, ମୃତ୍ୟୁ, ମଡ଼କ ଓ ମହାମାରୀରେ, ରାସ୍ତାରେ, ଗଳିରେ, ବସ୍ତିରେ —ଯେଉଁ ଅତି ପରିଚିତ ମଣିଷଟି ଶତ ନମସ୍କାରର ପ୍ରତି ନମସ୍କାର ଜଣାଇ ଜଣାଇ ନାନା କୁଶଳ ପ୍ରଶ୍ନ ଜିଜ୍ଞାସା କରି କରି ଘୂରୁଥିଲେ, ବୁଲୁଥିଲେ, ସେବାର ଯେ ଥିଲେ ଏକ ଜୀବନ୍ତ ବିଗ୍ରହ, ସଂବେଦନଶୀଳ ସହାନୁଭୂତିର ଯିଏ ଥିଲେ ଏକ ସ୍ନିଗ୍ଧ ପ୍ରତିମା, ଅନନ୍ତ ଜ୍ଞାନପିପାସାର ଯିଏ ଥିଲେ ଏକ ଅଶାନ୍ତ ପ୍ରତିମୂର୍ତ୍ତି, ପୁଣି ସର୍ବୋପରି ଯିଏ ଥିଲେ ଅସାଧାରଣ ଭାବରେ ସାଧାରଣ ମଣିଷ, ବ୍ୟର୍ଥତାର ଜ୍ୱାଳା ଯାହାଙ୍କୁ କେବେ ଉତ୍ପୀଡ଼ିତ କରି ନ ଥିଲା, କିମ୍ବା ଉତ୍କଟ ରାଜନୈତିକ ଉଚ୍ଚାକାଂକ୍ଷା ଯାହାଙ୍କୁ କେବେ ଜର୍ଜରିତ କରି ନଥିଲା । ଏକ ସଂସ୍କୃତିମନ୍ତ ଭାରତୀୟ ଜନତାର ସାର୍ବଜନୀନ ପ୍ରତିନିଧି ଥିଲେ ଶ୍ରୀ ଲକ୍ଷ୍ମୀନାରାୟଣ ସାହୁ । ସମାଜରେ ଯେଉଁ ମୁଷ୍ଟିମେୟ କେତେ

ଜଣ ମୃତ୍ୟୁର ଗ୍ରାସରେ ବିଲୀନ ହେବାପରେ ଏକ ଅପୂରଣୀୟ ଶୂନ୍ୟତା ଛାଡ଼ିଯାଆନ୍ତି, ଲକ୍ଷ୍ମୀନାରାୟଣ ସାହୁ ସେହିପରି ଜଣେ । ମୋ ମତରେ ଏହାହିଁ ତାଙ୍କ ଜୀବନ ଓ ସାଧନାର ଶେଷ ପରିଚୟ ।

(ଲକ୍ଷ୍ମୀନାରାୟଣ ଗ୍ରନ୍ଥାବଳୀ—ଭୂମିକା ପୃ ୧)

କିନ୍ତୁ ପ୍ରଶ୍ନ ଉଠେ, ଏ ବୈଜ୍ଞାନିକ ଯୁଗରେ, ଏ Specialisation ଯୁଗରେ, ଏ ତୀକ୍ଷ୍ଣ ବୁଦ୍ଧି, ପ୍ରତ୍ୟୁତ୍ପନ୍ନମତିତା ଓ ଐନ୍ଦ୍ରଜାଲିକ ନେତୃତ୍ୱର ଯୁଗରେ ଲକ୍ଷ୍ମୀନାରାୟଣ ସାହୁଙ୍କ ଭଳି ଜଣେ ଭାରତୀୟ ଖେଚେଡ଼ି—'a Jack of all trades, master of none' ବଞ୍ଚିବେ କେତେଦିନ ? କେମିତି ? ଓ କାହିଁକି ? ଲାଲ ବାଲ ପାଲଙ୍କ ମଧ୍ୟରୁ ଜଣେ ନିଷ୍କାପର କର୍ମୀ, ତ୍ୟାଗୀ ଓ ବାଗ୍ମୀ ବିପିନ ବିହାରୀ ପାଲ୍ ଶେଷରେ ପରାଭୂତ ହୋଇ କହିଥିଲେ— I can give you logic, not magic.'ତେଣୁ ଏ magic ଯୁଗରେ gugglery ଯୁଗରେ ଜଣେ ଶାନ୍ତ ଶିଷ୍ଟ ମଣିଷର ସ୍ଥାନ କାହିଁ ?......... ତ୍ୟାଗ, ସେବା ଓ ଆନ୍ତରିକତାର ଜୀବନ୍ତ ପ୍ରତିମୂର୍ତ୍ତି ତିନି ତିନି ଥର ପ୍ରଧାନମନ୍ତ୍ରୀଙ୍କ ଆସନରେ ବସିଥିବା ଶ୍ରୀ ଗୁଲଜାରିଲାଲ ନନ୍ଦା କଂଗ୍ରେସ କମିଟି ବୈଠକରେ ପ୍ରବେଶ କରିବାକୁ ସାମାନ୍ୟ ଟିକେଟଟିଏ ପାଉନାହାନ୍ତି । ଗେଟ୍‌ରୁ ବାହାର କରି ଦିଆଯାଉଛି । 'ସେ ପ୍ରଧାନମନ୍ତ୍ରୀ ଥିଲେ' କିଏ କହି ଦେଲେ, ଓଲଟା ପ୍ରଶ୍ନ ଆସୁଛି—so what? କ'ଣ ହୋଇଗଲା ସେଇଠୁ ? ଏଇ ଯେତେବେଳେ ଦେଶର ଅବସ୍ଥା, ସେତେବେଳେ ଲକ୍ଷ୍ମୀନାରାୟଣ ସାହୁଙ୍କ ଭଳିଆ ଗୋଟିଏ ସାଲୁ ପରିବା, ଗୋଟିଏ ଇସ୍କୁଲ ମାଷ୍ଟରିଆ ଢଙ୍ଗର ମଣିଷ, ଯିଏ ଜୀବନସାରା କହିଆସିଲା—ଖାଲି ପ୍ରାଇମେରୀ ସ୍କୁଲ ମାଷ୍ଟର ଭଳି—"ଲେଖ, ପଢ଼, ଲିଖ, ପୁଣି ଲେଖ" ବା ରଗିମାଗି କହିଲା—

"କାମକର, କାମକର, କାମକର
କାମ କଲେ କହିବି ଭାଇ ଓ ଭଉଣୀ ମୋର
କାମ ନ କଲେ କହିବି ଶଳା ଓ ଶାଳୀ ମୋର
କାମକର, କାମକର, କାମକର,"

ସେ ଲୋକ ବଞ୍ଚିବ ନା ମାଡ ଖାଇବ ? ନା ତା' ବହି, ତା' ଜୀବନୀ, ଆତ୍ମଜୀବନୀକୁ ବିଂଶ ଶତାବ୍ଦୀ ନ ପୂରୁଣୁ ଲୋକେ ପୋଡ଼ିବେ, ଜାଳିବେ, ତା' ମୂର୍ତ୍ତି ଖଣ୍ଡଖଣ୍ଡ କରି ହାଣିବେ ବକ୍‌ସି ବଜାର ହିନ୍ଦୁ ସେବକ ସଂଘ ପ୍ରାଙ୍ଗଣରେ । ଆପଣ କୁହନ୍ତୁ, କୁହନ୍ତୁତ ।

ନା, ମୁଁ କହିବି–ନିଶ୍ଚେ ବଞ୍ଚିବେ ଅଲ୍‌ବତ୍ ବଞ୍ଚିବ । ଯେତେଦିନ ପର୍ଯ୍ୟନ୍ତ ମଣିଷ ଆଖିରେ ଲୁହ ଅଛି, ଛାତିରେ ହୃଦୟ ଅଛି, ଭିତରେ ବାତ୍ସଲ୍ୟ ଅଛି, ପ୍ରେମ ଅଛି, କୋହ ଅଛି, ମୋହ ଅଛି । ଛାତି ଫଟେଇ ଆଖି ଫୁଟେଇ ଝରଝର ଲୁହ ଅଛି, ସେତେଦିନ ପର୍ଯ୍ୟନ୍ତ ଓଡ଼ିଶାରୁ ଅନ୍ତତଃ ତିନି ଜଣ ଲୋକ ମରି ପାରିବେ ନାହିଁ–ଗୋପବନ୍ଧୁ, ଆଚାର୍ଯ୍ୟ ହରିହର, ଲକ୍ଷ୍ମୀନାରାୟଣ ସାହୁ । ଯିଏ ଲୋକଙ୍କ ଭିତରେ ମିଶିଯାଇଥିଲେ, ହଜି ଯାଇଥିଲେ ଗୋଟିପଣେ–ଯିଏ ଲୋକଙ୍କ ଦୁଃଖ ଖାଲି କଳ୍ପନା କରି ଭେଁ ଭେଁ କାନ୍ଦୁଥିଲେ ସତ୍ୟବାଦୀରେ, ବୈତରଣୀ ବଢ଼ିରେ ପଦ୍ମା ନଈରେ ପହଁରି ପହଁରି ଚୁଡ଼ା, ଗୁଡ଼ଲ ଧରି ଆରପାରିକି ଗଲାବେଳେ ।

'Lakshmi Narayan was the Gandhi of Orissa. Circumstanced within the eventless environment of this little province, he stretched his hands to the Himalayas when famine visited Badrinath in 1918, when high floods overwhelmed Lakshmipur, Dibrugarh Jorhat, Sibsagar of Assam, Barisal of East Bengal (then) in 1919 and Puri and Kenojhar of Orissa in 1927. When the salt Satyagrahis of Balasore and Ganjam were harrassed in the hands of Police in 1942, he was god's good angel piloting relief operations and saving precious lives from death and starvation. Wherever he saw oppression, exploitation, corruption, aggressiveness, arrogance, he fought tooth and nail"

– Dr Pabitra mohan nayak

('Lakshmi Narayan Sahu – An Itinerant Iceberg'
ଚିର ଯୌବନ ଚିର ବସନ୍ତ ପୃ-୯)

(ଲକ୍ଷ୍ମୀନାରାୟଣ ଓଡ଼ିଶାର ଗାନ୍ଧୀ ଥିଲେ । ଘଟଣା ବିହୀନ ଏହି କ୍ଷୁଦ୍ର ପରିବେଶ ଭିତରେ ସେ ଯେମିତି ଶ୍ୱାସରୁଦ୍ଧ ହେଇ ଯାଉଥିଲେ । ତେଣୁ ସେ ୧୯୧୮ ରେ ହିମାଳୟ ଉପରକୁ ଧାଇଁ ଯାଇ ବଦ୍ରିନାଥର ଦୁର୍ଭିକ୍ଷ-ପ୍ରପୀଡ଼ିତ ଲୋକଙ୍କର ସେବା କରିଥିଲେ; ୧୯୧୯ର ଆସାମର ଲକ୍ଷ୍ମୀପୁର, ଡିବ୍ରୁଗଡ଼, ଜୋରହାଟ, ଶିବସାଗର ଓ ପୂର୍ବବଙ୍ଗର ବରିଶାଲ ଅଞ୍ଚଳକୁ ଯାଇ ବନ୍ୟା-ପ୍ରପୀଡ଼ିତ ଲୋକଙ୍କର ସେବା କରିଥିଲେ ଓ ଅନୁରୂପ ସେବା କରିଥିଲେ ଓଡ଼ିଶାର ପୁରୀ ଓ କେଉଁଝର ଅଞ୍ଚଳରେ ୧୯୨୭ ମସିହାରେ । ଲବଣ ସତ୍ୟାଗ୍ରହ ବେଳେ ଓ ୧୯୪୨ର ଅଗଷ୍ଟ ଆନ୍ଦୋଳନ ବେଳେ ବ୍ରିଟିଶ ସରକାରଙ୍କ ଦ୍ୱାରା ଅତ୍ୟାଚାରିତ ବାଲେଶ୍ୱର ଓ ଗଞ୍ଜାମର ସତ୍ୟାଗ୍ରହୀମାନଙ୍କ ପାଖରେ ସେ ଈଶ୍ୱରଙ୍କ ଦୂତ ଭଳି ପହଞ୍ଚିଥିଲେ ଓ ଖାଦ୍ୟସାମଗ୍ରୀ ଦେଇ, ସାନ୍ତ୍ୱନା ଦେଇ, ଅନାହାର ଓ ମୃତ୍ୟୁ ମୁଖରୁ ବହୁ ମୂଲ୍ୟବାନ ଜୀବନ ବଞ୍ଚାଇଥିଲେ । ଯୋଉଠି ସିଏ ଶୋଷଣ, ପୋଷଣ, ଲୁଣ୍ଠନ ଓ ଅତ୍ୟାଚାର ଦେଖୁଥିଲେ, ଦୁର୍ନୀତି ଓ ଔଦ୍ଧତ୍ୟ ଦେଖୁଥିଲେ, ସେଠିକି ସେ ସିଂହ ବିକ୍ରମରେ ଡାକ ଦେଉଥିଲେ ଏବଂ ଯୁଦ୍ଧ କରୁଥିଲେ ଜୀବନ ପଣ କରି । )

ତେଣୁ ଖାଲି ଏଲ୍. ପି ସ୍କୁଲ ମାଷ୍ଟର ଭଳି ସେ ଲୋକଙ୍କୁ 'ଲେଖ, ପଢ଼, ଶିଖ' କହୁ ନ ଥିଲେ । ସେ ଥିଲେ ଗରିବର, ଦୁଃଖୀର, ପାଣର, ପରଜା, ଗଦବା, ସଉରର ବୋଉ, ମା' ମାଉସୀ, ନାନୀ । ତାଙ୍କ ତୁଣ୍ଡରେ ଆହାର ନ ଦେଲେ, ତାଙ୍କ ଘା' ଧୋଇ ନ ଦେଲେ ଲକ୍ଷ୍ମୀନାରାୟଣ ଖାଇବେ ? ରହିବେ ? ବଂଚିବେ ? ତେଣିକି କୁଷ୍ଠରୋଗ ହେଉ, ଆକ୍ରମା ହେଉ, ଗତିସାର ପେଲି ହେଇ ହେଇ ମରନ୍ତୁ ପଛେ । ଲକ୍ଷ୍ମୀନାରାୟଣ ନେତା ନଥିଲେ, ଥିଲେ ସାମାନ୍ୟ କର୍ମୀ । ଲକ୍ଷ୍ମୀନାରାୟଣ ରାଜନୀତି ବୁଝୁ ନ ଥିଲେ, ବୁଝୁଥିଲେ ଦେଶପ୍ରୀତି; ଲକ୍ଷ୍ମୀନାରାୟଣ ଶାସକ ନ ଥିଲେ, ଥିଲେ ସେବକ; ସେ ପଣ୍ଡିତ ନ ଥିଲେ, ଥିଲେ ପ୍ରେମିକ, ଭାବୁକ, ରସିକ, ସ୍ନେହ-ରଙ୍କ ସ୍ନେହ-କାଙ୍ଗାଳ, ସ୍ନେହ-ପାଗଳ ।

ସେଇ ଲକ୍ଷ୍ମୀନାରାୟଣ ଏତେ ଶୀଘ୍ର ମରିଯିବେ ? କିନ୍ତୁ ଯଦି ବଞ୍ଚିବେ—ବଞ୍ଚିବେ ତାଙ୍କ ବୁଦ୍ଧି ପାଇଁ ନୁହେଁ, ବିଚକ୍ଷଣତା ପାଇଁ ନୁହେଁ,

ବଞ୍ଚିବେ ଏଇ ପ୍ରେମ ପାଇଁ, ପ୍ରୀତି ପାଇଁ, ମାନବିକତା ପାଇଁ, ଗଭୀରତା ପାଇଁ, ହୃଦୟବତ୍ତା ପାଇଁ । ମଣିଷ ହିଁ ମଣିଷ, ସବୁ ମଣିଷ ଅମୃତର ସନ୍ତାନ । ସେଠି ହାଡ଼ି ନାହିଁ, ପଠାଣ ନାହିଁ, ଖିରସ୍ତାନ ନାହିଁ, ଗୋରା ନାହିଁ, କଳା ନାହିଁ, କିଛି ନାହିଁ । ଚୈତନ୍ୟଙ୍କ ଭଳି, ଅବଧୂତଙ୍କ ଭଳି, ସେଣ୍ଟ ଫ୍ରାନ୍‌ସିସ୍ ଅଫ୍ ଆଶିଷିଙ୍କ ଭଳି ବାବା ଆମତେଙ୍କ ଭଳି ସମସ୍ତଙ୍କୁ କୋଳକରିବା, ସମସ୍ତଙ୍କୁ ସଙ୍ଖୋଳି ଯାଇଁ ମାଗିମାଗି ପଖାଳ କଂସାରେ ହାତ ପୂରେଇ ଏକା ସାଙ୍ଗରେ ଖାଇବା, ଅପମାନକୁ ଝୁଲମୁଣିରେ ପୂରେଇଦେଇ, ସମ୍ମାନକୁ ଗୋଇଠାମାରି ହସିହସି ଶତ୍ରୁ ମିତ୍ର ସମସ୍ତଙ୍କ ଗୋଡ଼ତଳକୁ ଦଉଡ଼ିଯିବା—ପିଲାଛୁଆ, ବୁଢ଼ାହଡ଼ା, ଯୁବକଯୁବତୀ, ମୂର୍ଖପଣ୍ଡିତ ସମସ୍ତଙ୍କ ସାଙ୍ଗରେ ବସିବା, ହସିବା, ରସିବା, ମଜ୍ଜିବା, ଗୀତଗାଇବା, ବିଭୋର ହେବା—ଏଇ ଲକ୍ଷ୍ମୀନାରାୟଣ । ପାଗଳ ନ ହେଲେ, ବଦ୍ଧପାଗଳ ନ ହେଲେ ଯା' କିଏ କରିପାରିବ ? ଲକ୍ଷ୍ମୀକାନ୍ତ ଗାଇଥିଲେ, ଲକ୍ଷ୍ମୀନାରାୟଣ ଜୀବନରେ ପ୍ରମାଣ କରିଗଲେ—

"ଦେ' ମୋତେ ବାଇଆ କରି
ଆରେ ମୋର ବାଇଆ ରଜା
ନାଚିବି ମୁଁ ଲଙ୍ଗଳା ହୋଇ
(ତୁ) ତାଳିମାରି ଦେଖିବୁ ମଜା । "

(କାନ୍ତ ସାହିତ୍ୟ ମାଳା—ଦ୍ୱିତୀୟ ଭାଗ—ପୃ—୧୧୬୯)

ବଡ଼ ହୁଅନ୍ତୁ, ଛୋଟ ହୁଅନ୍ତୁ, ଗୁଣୀଗଣ—ଗଣନା ବେଳେ ତାଙ୍କ ନାମ ଖଡ଼ି ମୁନରେ ଲେଖା ହେଉ ବା ନହେଉ ପଛେ, ଯଦି ଲକ୍ଷ୍ମୀନାରାୟଣ କେବେ ବଞ୍ଚନ୍ତି, ହୁଏତ ବଞ୍ଚିବେ ଏଇ ତନ୍ମୟତା ପାଇଁ, ବିଭୋରତା ପାଇଁ, ବର୍ଷାକାଳର କୂଳ-ଉଛୁଳା ଝିଙ୍କର ଝରଣାଟି ଭଳି ତାଙ୍କ ହୃଦୟର ଆବେଗ ପାଇଁ— ଉନ୍ମାଦନା ପାଇଁ ।

ଏତେ ସ୍ନେହୀ ଲୋକର କିଏ ଶତ୍ରୁ ହେଇ ପାରିବ ? ଜଗନ୍ନାଥ ଧାମର ସାମ୍ୟ, ମୈତ୍ରୀ, କରୁଣା, ବସୁଧୈବ କୁଟୁମ୍ବକମ୍ ନୀତି, ସର୍ବଭୂତେ ବାସୁଦେବ ନୀତି—ସମସ୍ତଙ୍କ ଭିତରେ କୋଳାକୋଳି, ଗୋଳାଗୋଳି, ମିଳାମିଳି

ଯଦି କାହାରି ପାଖରେ ବେଶୀ ଥିଲା, ସେ ହେଉଛନ୍ତି ଲକ୍ଷ୍ମୀନାରାୟଣ ସାହୁ । ତେଣୁ ସାମ୍ୟବାଦୀ ନେତା ଶ୍ରୀ ସୁରେନ୍ଦ୍ର ନାଥ ଦ୍ୱିବେଦୀ ତାଙ୍କୁ ଶ୍ରେଷ୍ଠ ସମ୍ମାନ ଦେଇ ଲେଖିଲେ :

"Politically he (Lakshmi Narayan) became a symbol of strength and courage and fearlessly expressed himself against British and other tyranny and unbecoming public conduct. He was fighting for moral principles and hence there was no trace of bitterness or personal animosity in his criticism, Ultimately he was accepted as the spokesman of the impartial public voice of Orissa and he was respected by all concerned both during the British days and thereafter.

His tiansparent honesty and integrity and selflessness have left deep impact in Orissa's public life. Orissa is prcud of him"

(ଚିରଯୌବନ ଚିରବସନ୍ତ—ପୃ ୧୩)

ଲକ୍ଷ୍ମୀନାରାୟଣ ଏକ ଅମିତ ବିକ୍ରମ ଓ ସାହସର ପ୍ରତୀକ ଥିଲେ । ଅତି ନିର୍ଭୀକ ଭାବରେ ଖୋଲ୍ଖୋଲ୍ କଥା କହି ସେ ବ୍ରିଟିଶ ଅମଳରେ ଓ ତାପରେ ସ୍ୱାଧୀନ ଭାରତରେ ବି ଅତ୍ୟାଚାରୀ, ନିରଙ୍କୁଶ ଶାସକମାନଙ୍କ ହୃଦୟରେ ଭୀତି ସଞ୍ଚାର କରୁଥିଲେ । କିନ୍ତୁ ଏକ ନୈତିକ ମୂଲ୍ୟବୋଧ ପାଇଁ ସେ ସର୍ବଦା ସଂଗ୍ରାମ କରୁଥିବାରୁ କାହାରି ପ୍ରତି ତାଙ୍କର କିଛି ବ୍ୟକ୍ତିଗତ ଆକ୍ରୋଶ ବା ତିକ୍ତତା ନ ଥିଲା । ଏକ ସ୍ୱଚ୍ଛ ସାଧୁତା, ଗଭୀର ନିଷ୍ଠା ଓ ନିଃସ୍ୱାର୍ଥପରତା ତାଙ୍କ ଚରିତ୍ରର ମୂଳଭିତ୍ତି ଥିଲା ଏବଂ ତା'ର ପ୍ରଭାବ ଓଡ଼ିଶାର ସାଧାରଣ ଜୀବନରେ ଗଭୀର ଭାବେ ପ୍ରତିଫଳିତ ହୋଇଥିଲା । ତାଙ୍କ ପାଇଁ ଓଡ଼ିଶା ଗର୍ବିତ ।

କବିଚନ୍ଦ୍ର କାଳୀଚରଣ ପଟ୍ଟନାୟକ ଖାଲି ଜଣେ ରସିକ, କଳାକାର ନୁହଁନ୍ତି, ଜଣେ ଚିହ୍ନର ଗ୍ରାହକ ବି । ସେ ବୁଲାଫକୀର ଲକ୍ଷ୍ମୀନାରାୟଣଙ୍କୁ ଯେମିତି

ଚିହ୍ନିଥିଲେ, ସେମିତି ବୋଧେ କେହି ଚିହ୍ନି ନ ଥିବେ । ସେ ତାଙ୍କର 'ବେକାର' ନାଟକ ଲକ୍ଷ୍ମୀନାରାୟଣଙ୍କୁ ଉତ୍ସର୍ଗ କରି ୧୯୪୫ରେ ଲେଖିଥିଲେ–

"ଭଙ୍ଗା କୁଡିଆରେ ଦିନେ–ରାଜମହଲରେ ଦିନେ, କ୍ଷୁଦ୍ର ଗ୍ରାମରେ ଦିନେ–ପୁଣି ଝିରିଝିରିସାରେ ଦିନେ, ଏଇ ହେଲା ଯାହାର ଜୀବନର ଆନନ୍ଦ–ଏ ଦୁନିଆର ଚିଡ଼ିଆଖାନା ସେଇ ଏକା ଦେଖିଛି । ଦେଖିଲାପରି, ସରଳିଆ ମନ, ହସଫୁଟା ମୁହଁ, ଅହଙ୍କା ନ ଥିଲା ଛାତି–ଗୋଟିଏ ଦାମ୍ ଅଛି ଏ ସବୁର । ଭଗବାନଙ୍କ ଦିଆ ଏହି ଜିନିଷଗୁଡ଼ିକ ଟିକିଏ ଖଚିଚିଚି କାମରେ ଲଗେଇ-ପାରିଲେ ଯିବା ବାଟ ବେଶ୍ ଚିକ୍କଣ ହେଇଯାଏ । ଆପଣ ଛାତିରେ ହାତ-ରଖି କହିପାରିବେ ଲକ୍ଷ୍ମୀନାରାୟଣ ବାବୁ, ମୁଁ ଯାହା କହିଲି, ସବୁ ଆପଣ ସାଇତି ରଖି ନାହାନ୍ତି ? "

( ବେକାର –ଉତ୍ସର୍ଗ–ତା-୧୫-୮-୪୫)

ଲକ୍ଷ୍ମୀନାରାୟଣ ଏ ସବୁ ସାଇତି ରଖିଥିଲେ କି ନାହିଁ କେଜାଣି । କିନ୍ତୁ ସେଇ କାଳୀଚରଣଙ୍କ ଭାଷାରେ–

'ଏ ଆଖି ତ କେତେ ଦେଖିଛି ଦେଖୁଛି–ହେଲେ ସାହୁକାରୀ ବାହାରେ' ସଙ୍ଗାତ ସଙ୍ଗାତ । ଭିତରେ କଂସାରୀ କରତ'–ମୋଟେ ନୁହଁନ୍ତି ।'

ତେଣୁ ଗଣ ଭିତରେ ଯେ ଜଣେ ହୋଇ ଗଣା–ତା'କୁ ଭଲ ଭୁଲିବି କେମିତି ? (ଚିରଯୌବନ ଚିରବସନ୍ତ ପୃ ୭୩)

'ସରଳିଆ ମନ, ହସଫୁଟା ମୁହଁ, ଅହଙ୍କା ନ ଥିଲା ଛାତି'ର ମଣିଷ ଲକ୍ଷ୍ମୀନାରାୟଣ ।

'Transparent-honesty, integnity and Selflessness'ର ମଣିଷ ଲକ୍ଷ୍ମୀନାରାୟଣ ।

'Service, Suffering, devotion, honesty and integnity'ର ମଣିଷ ଲକ୍ଷ୍ମୀନାରାୟଣ ।

ତାଙ୍କୁ କେହି ଭୁଲିପାରେ ?

ଡକ୍ଟର ହରେକୃଷ୍ଣ ମହତାବ କହନ୍ତି– ଆଜିକାର ଲୋକେ କେବଳ ନିଜ ନିଜର ଜୀବିକାରେ ବ୍ୟସ୍ତ ଯଜ୍ଞ ପାଇଁ କେହି ବ୍ୟସ୍ତ ନୁହଁନ୍ତି ।

କିନ୍ତୁ ଏଇଠି ଜଣେ ଲୋକ ଲକ୍ଷ୍ମୀନାରାୟଣ ସାହୁ, ଯିଏ କେବଳ ଜୀବିକା ପାଇଁ ବ୍ୟସ୍ତ ନ ଥିଲେ, ସବୁବେଳେ ଯଜ୍ଞ ପାଇଁ ବ୍ୟସ୍ତ । ଏହି ଯଜ୍ଞହିଁ ତାଙ୍କ ବ୍ୟକ୍ତିତ୍ୱ, ତାଙ୍କ ମହତ୍ତ୍ୱ, ତାଙ୍କ ମହନୀୟତା !

ସାହିତ୍ୟିକ ସୁରେନ୍ଦ୍ର ମହାନ୍ତି ଯଥାର୍ଥରେ କହିଛନ୍ତି– "ଲକ୍ଷ୍ମୀନାରାୟଣ ଥିଲେ ଜଣେ ବ୍ରହ୍ମଦର୍ଶୀ, ସତ୍ୟଦର୍ଶୀ, ତତ୍ତ୍ୱଦର୍ଶୀ, ଶ୍ରେଷ୍ଠ ଦାର୍ଶନିକ...ମାଟିର ଦାର୍ଶନିକ, ମୋ ଦୃଷ୍ଟିରେ ଏହାହିଁ ଲକ୍ଷ୍ମୀନାରାୟଣଙ୍କର ଶ୍ରେଷ୍ଠ ପରିଚୟ । ତାଙ୍କର ଜୀବନ ବିଟ୍‌ନିକ୍ କବିତା ପରି, ଶୂନ୍ୟବାଦୀ ଦର୍ଶନ ପରି ମହାଶୂନ୍ୟର ଗଣିତ ପରି ସରଳ ଅଥଚ ଚିର ରହସ୍ୟମୟ । ପଥପାର୍ଶ୍ୱର ବୃକ୍ଷପରି ସେ କେବଳ ଛାୟା ଦେଇଛନ୍ତି, ମାତ୍ର ଧନ୍ୟବାଦ ପାଇଁ ଅପେକ୍ଷା କରିନାହାଁନ୍ତି ।"

(ମାଟିର ଦାର୍ଶନିକ–ଲକ୍ଷ୍ମୀନାରାୟଣ ସ୍ମରଣିକା ପୃ-୪)

ଲକ୍ଷ୍ମୀନାରାୟଣଙ୍କର ଜୟ ହେଉ । ଲକ୍ଷ୍ମୀନାରାୟଣ ବଞ୍ଚିରହନ୍ତୁ । ବିଶ୍ୱପିତାଙ୍କ ଚରଣତଳେ ଏଇ ପ୍ରାର୍ଥନା ।

□□□

## ॥ ଦଶ ॥

### ତାଙ୍କ ଜୀବନର ସ୍ମରଣୀୟ ଘଟଣା

ଜନ୍ମ : ୧୮୯୦ ଅକ୍ଟୋବର ୩ (ବାଲେଶ୍ୱର ବାବବାଟୀ) ବିବାହ : ୧୯୦୨
ଏଣ୍ଟ୍ରାନସ୍ ପାଶ୍ ୧୯୦୮ (ବାଲେଶ୍ୱର ଜିଲ୍ଲାସ୍କୁଲ)
କୋଗନ୍ କ୍ଲବ, ବାଇବେଲ ସୋସାଇଟି, ବ୍ରହ୍ମସମାଜ ଗଠନ ୧୯୦୯-୧୧
ଆଇ. ଏସ୍. ସି ପାଶ୍ ୧୯୧୧ (ରେଭେନସା କଲେଜ)
ଶିବ୍‌ପୁର ଇଂଜିନିୟରିଂ କଲେଜରେ ପ୍ରବେଶ ୧୯୧୧
ପୁରୀ ଭିକ୍ଟୋରିଆ ହୋଟେଲରେ ମ୍ୟାନେଜରୀ ୧୯୧୨
କଟକ ମିଶନ ସ୍କୁଲରେ ଶିକ୍ଷକତା ୧୯୧୨—୧୬
ବି. ଏ ପାଶ୍ (ଘରେଇ ଭାବେ) ୧୯୧୭
ହିନ୍ଦ୍ ସେବକ ସମିତି ବା
The Servants of India Socityରେ ଯୋଗଦାନ ୧୯୧୭ ଜୁନ୍.
ଉତ୍ତର ପ୍ରଦେଶରେ ଦୁର୍ଭିକ୍ଷ କାମ ୧୯୧୭-୧୮
ଜାମ୍‌ସେଦ୍‌ପୁର ଶ୍ରମିକ ସଂଗଠନ ୧୯୧୮
ଉତ୍କଳ ସେବାସମିତି ଗଠନ ୧୯୧୮-୧୯,
ଆସାମ ଓ ପୂର୍ବବଙ୍ଗ ବନ୍ୟା ଓ ବାତ୍ୟା ରିଲିଫ୍ କାମ ୧୯୧୯
କୋ-ଅପରେଟିଭ୍ ଆନ୍ଦୋଳନ ୧୯୧୯
ପୁରୀ ଦୁର୍ଭିକ୍ଷରେ ସେବା ୧୯୧୯-୨୧
ସାମାଜିକ ଜୀବନ—ସହକାର ସଂପାଦନା ୧୯୧୮
The Star of Utkala ସଂପାଦନା ୧୯୨୧

The Vaitarani, The Oriya ସଂପାଦନା ଓ ପ୍ରକାଶନ

ଚଉଦ୍ୱାର ଗ୍ରାମ ସଙ୍ଗଠନ କେନ୍ଦ୍ର ସ୍ଥାପନ ୧୯୨୭
ଚଉଦ୍ୱାର ମାଇନର ସ୍କୁଲ ପ୍ରତିଷ୍ଠା ୧୯୨୭
ବୈତରଣୀ ବନ୍ୟାରେ କେନ୍ଦୁଝରର ଆନନ୍ଦପୁର ସବ୍‌ଡ଼ିଭିଜନରେ
ରିଲିଫ୍ କାମ ୧୯୨୭
ବର୍ମାଭ୍ରମଣ ୧୯୨୭

ଏମ୍. ଏ. ପାଶ୍ (ଭାରତୀୟ ଭାଷା) ୧୯୨୩
ଏମ୍, ଏ. ପାଶ୍ (ଅର୍ଥନୀତି) ୧୯୩୧
ଏମ୍ ଏ. ପାଶ୍ (ଇଂରେଜି) ୧୯୩୨
ଏମ୍. ଏ ପାଶ୍ (ଇତିହାସ) ୧୯୫୩
ଏମ୍. ଏ ଫେଲ୍ (ଦର୍ଶନ) ୧୯୩୯

ସଭାପତି, ଗଞ୍ଜାମଜିଲ୍ଲା ହରିଜନ ସମ୍ମିଳନୀ, ବୋଇରଣୀ ୧୯୩୪
ସଭାପତି, ଉତ୍କଳ ଯାଦବ ମହାସଭା ୧୯୩୫
ସଭାପତି, ସିଂହଭୂମ୍ ସାହିତ୍ୟ ସମ୍ମିଳନୀ, ଜାମସେଦ୍‌ପୁର ୧୯୩୫
ସେକ୍ରେଟେରୀ, ଉତ୍କଳ ପ୍ରାନ୍ତୀୟ ହିନ୍ଦୀ ପ୍ରଚାର ସଭା ୧୯୩୪-୩୫
ସେକ୍ରେଟେରୀ, ଉତ୍କଳ ହୋମିଓପ୍ୟାଥି କଲେଜ, କଟକ ୧୯୩୪-୩୫
ସେକ୍ରେଟାରୀ, ମହିମା ଧର୍ମ ପ୍ରଚାର ସଭା ୧୯୩୪-୩୫
ପାରିକୁଦ, ମାଲୁଦରେ ରିଲିଫ୍ କାମ ୧୯୩୪-୩୫
ଡ଼ିରେକ୍ଟର, କଟକ ସେଣ୍ଟ୍ରାଲ୍ କୋଅପରେଟିଭ୍ ବ୍ୟାଙ୍କ ୧୯୩୪-୩୫
ସେକ୍ରେଟେରୀ ଉତ୍କଳ ସାହିତ୍ୟ ସମାଜ, କଟକ ୧୯୩୪ ଓ ୧୯୩୫

ବରୋଦା ଲାଇବ୍ରେରୀ ଆନ୍ଦୋଳନ ୧୯୩୭
ରାୟଗଡା ଠକ୍କର ବାପା ଆଶ୍ରମ ସ୍ଥାପନ ୧୯୩୯
ଚଣ୍ଡୀଖୋଲ ଠକ୍କର ବାପା ବିଦ୍ୟାଶ୍ରମ ୧୯୪୦
ରମ୍ଭା ଅନାଥାଶ୍ରମ ପ୍ରତିଷ୍ଠା ୧୯୪୨-୪୩
ମଂଜୁଷା ବାଳାଶ୍ରମ ପ୍ରତିଷ୍ଠା ୧୯୪୨-୪୩
କଳକଳା କୁଷ୍ଠାଶ୍ରମ ପ୍ରତିଷ୍ଠା ୧୯୪୨-୪୩

| | |
|---|---|
| ଚଉଦ୍ୱାର କୁଷ୍ଠ ଚିକିତ୍ସା କେନ୍ଦ୍ର | ୧୯୨୭ |
| କୋରାପୁଟ, ଜୟପୁରରେ ଆଦିବାସୀଙ୍କ ସେବା | ୧୯୩୮-୪୧ |
| କବି ସମ୍ମିଳନୀ ବ୍ରହ୍ମପୁର | „ |
| ସଭାପତି ଉତ୍କଳ ସମ୍ମିଳନୀ, ମଂଜୁଷା | „ |
| ସେକ୍ରେଟେରୀ, ଉତ୍କଳ ସମ୍ମିଳନୀ ସୁବର୍ଣ୍ଣ ଜୟନ୍ତୀ | ୧୯୫୫ |
| ସେକ୍ରେଟେରୀ, ଓଡ଼ିଶା ରିଲିଫ୍ କମିଟି (ଗଞ୍ଜାମ ଓ ଉତ୍ତର ବାଲେଶ୍ୱରରେ ଦୁର୍ଭିକ୍ଷ କାର୍ଯ୍ୟ) | ୧୯୪୨-୪୩ |
| ରେଭେନସା କଲେଜ କନିକା ଲାଇବ୍ରେରୀକୁ ୧,୬୮୪ ଖଣ୍ଡ ପୁସ୍ତକ ପ୍ରଦାନ | ୧୯୪୩ |
| ବ୍ରହ୍ମବିଦ୍ୟା ସମିତିରେ ଆଜୀବନ ସଭ୍ୟ | ୧୯୪୪ |
| ସଭାପତି, ଉତ୍କଳ ଛାତ୍ର ସମ୍ମିଳନୀ | ୧୯୪୫ |
| ଚଉଦ୍ୱାରରେ ୧୨ ଦିନ ବ୍ୟାପୀ ଗ୍ରାମ ସଙ୍ଗଠନ ସମ୍ମିଳନୀ | ତା ୧-୮-୪୫ରୁ ତା ୧୨-୮-୪୫ |
| ସଭ୍ୟ, କନ୍‌ଷ୍ଟିଚ୍ୟୁଏଣ୍ଟ ଏସେମ୍ବ୍ଲି | ୧୯୪୬-୫୧ |
| ସଭ୍ୟ, ଓଡ଼ିଶା ଏସେମ୍ବଲି | ୧୯୪୬-୫୧ |
| ସଭାପତି, ଉତ୍କଳ ମଧୁବୈଶ୍ୟ ସମ୍ମିଳନୀ | ୧୯୪୭ |
| ମେମ୍ବର, ରୟାଲ ଏସିଆଟିକ ସୋସାଇଟି | ୧୯୪୯ |
| ମେମ୍ବର ଇଣ୍ଡିଆନ୍ ପି. ଇ. ଏନ୍ ବମ୍ବେ | ୧୯୫୦ |
| ସେକ୍ରେଟେରୀ, ଓଡ଼ିଶା ନଦୀ ନିୟନ୍ତ୍ରଣ ଆସୋସିଏସନ | ୧୯୫୨ |
| ହିନ୍ଦ୍ ସେବକ ସମିତି ଓଡ଼ିଶା ଶାଖା କଟକରେ ସ୍ଥାପନ | ୧୯୫୦ |
| ଆଦିବାସୀଙ୍କ ସମ୍ପର୍କରେ ଗବେଷଣା—ଦଣ୍ଡନାଟ (ପ୍ରତ୍ନତତ୍ତ୍ୱ) | ୧୯୪୭ |
| The Hill Tribes of Jeypore | ୧୯୫୧ |
| Springs of the Soul | ୧୯୫୧ |
| ଜୈନଧର୍ମ ସମ୍ପର୍କରେ ଗବେଷଣା— | |
| ଓଡ଼ିଶାରେ ଜୈନଧର୍ମ | ୧୯୫୯ |
| ଓଡ଼ିଶା ଓ ଜୈନଧର୍ମ | ୧୯୬୦ |

| | |
|---|---|
| ରବିବାସରୀୟ ସାହିତ୍ୟ ସଂସଦ, କଟକରେ ଭାଷଣ | ୧୯୫୭-୫୮ |
| ଟାଙ୍ଗି ହାଇସ୍କୁଲ (କଟକ) ପ୍ରତିଷ୍ଠାରେ ସହଯୋଗ | ୧୯୪୪ |
| ଚଉଦ୍ୱାର ଡ଼ି, ଏ, ଭି. ହାଇସ୍କୁଲ ପ୍ରତିଷ୍ଠା | ୧୯୪୧-୪୨ |
| ଟାଙ୍ଗି ସଙ୍ଗୀତ ସମ୍ମିଳନୀ ଆୟୋଜନ | ୧୯୪୬ |
| ସଭାପତି, ଓଡ଼ିଶା ସାହିତ୍ୟ ଏକାଡ଼େମୀ, ଭୁବନେଶ୍ୱର | ୧୯୫୮-୬୧ |

ଉପାଧି ଲାଭ:—

| | |
|---|---|
| ଭାରତ ସରକାରଙ୍କ ଠାରୁ "ପଦ୍ମଶ୍ରୀ" | ୧୯୫୫ |
| ଉତ୍କଳ ବିଶ୍ୱବିଦ୍ୟାଳୟରୁ "ଡ଼ି. ଲିଟ୍" | ୧୯୫୮ |
| ପୃଥିବୀ ଜୈନ ମିଶନରୁ 'ଇତିହାସ ରତ୍ନ" | ୧୯୫୮ |

ଆନ୍ଧ୍ର ଇତିହାସ ପ୍ରତ୍ନତତ୍ତ୍ୱ ସମିତିରୁ "ଭାରତ ତୀର୍ଥ

ଗୀତାରେ ପାରଦର୍ଶିତା ପାଇଁ 'ତତ୍ତ୍ୱନିଧି'

ବଙ୍ଗଳାଭାଷାରେ ନିପୁଣତା ପାଇଁ "ବିଦ୍ୟାରତ୍ନ"

ମୃତ୍ୟୁ : ୧୯୬୩ ଜାନୁୟାରୀ ୧୮ (କଟକ ଦେଉଳସାହି)

ତାଙ୍କ ଜୀବନାଦର୍ଶ : ମାନବ ପ୍ରେମ ।

□□□

# ପରିଶିଷ୍ଟ

## (କ) ତାଙ୍କ ସାହିତ୍ୟକୃତି ସମ୍ପର୍କରେ କେତୋଟି ଅଭିମତ :

ଲକ୍ଷ୍ମୀନାରାୟଣଙ୍କ ଓଡ଼ିଆ, ବଙ୍ଗଳା, ଇଂରେଜି କବିତା, ପ୍ରବନ୍ଧ, ରମ୍ୟରଚନା, ଗବେଷଣା ଆଦି ପାଠକରି ଓଡ଼ିଶା ତଥା ଭାରତର ବହୁ କବି, କଳାକାର, ମନୀଷୀ, ସାହିତ୍ୟ ପତ୍ରିକା ମୁଗ୍‌ଧ ହୋଇ ଯେଉଁ ଅଭିମତମାନ ଦେଇଛନ୍ତି ତାହାର ସଂଖ୍ୟା ବିପୁଳ । ତନ୍ମଧ୍ୟରୁ କେତୋଟି ଏଠାରେ ଦୃଷ୍ଟାନ୍ତ ସ୍ୱରୂପ ଦିଆଗଲା ।

ତାଙ୍କ କବିତା 'ବିକ୍ରମ ଦେବ' ପାଠ କରି ଅଥଳ ହୃଦୟ ସ୍ୱାମୀ ବିଚିତ୍ରାନନ୍ଦ ଦାସ ପୂର୍ଣ୍ଣିମା ନିଶିର ସମୁଦ୍ର ଭଳି ଉଦ୍‌ବେଳିତ ହୋଇ ଲେଖିଥିଲେ—

ଉତ୍କଳମାତାର କୋଟିନିଧି, ପାଗଳ ସନ୍ତାନ, ପ୍ରିୟ ଲକ୍ଷ୍ମୀନାରାୟଣ ବାବୁ !

ଭଗବାନ ତୁମକୁ ନୀରୋଗ ରଖନ୍ତୁ, ଦୀର୍ଘଜୀବୀ କରନ୍ତୁ—ଏହି ଆଶୀର୍ବାଦ ଆଜି କୁମାରୀ ପୂର୍ଣ୍ଣିମା ଦିନ । ଗୋଟିଏ କବିତାର ଅଂଶ ତୁମର ସଠିକ ବର୍ଣ୍ଣନା—କବିତାଟି ବଙ୍ଗଳା—ଏଠାରେ ଉଦ୍ଧାର କଲି । ଶନିବାରର ଚିଠି ଶ୍ରାବଣ ୧୩୫୯ରେ ଲେଖା ହୋଇଛି—

"ଯେ କବି ଖୁଁଜିୟା ମରେ କବିତାର ଭାବ ଛନ୍ଦ ମିଲ୍
ସେ କବି ଆସଲ୍ କବି ନୟ,

ଆସଲ୍ କବିର୍ ତରେ କବିତାଇ ଖୁଁଜେ ମରେ
କେଳେ କେଳେ ଫେରେ ଶୂନ୍ୟମୟ”
ବଲେ–“ଓଗୋ କୋଥା ତୁମି କୋଥା ସେହି କବି ଶକ୍ତିବର ?
ବାଣୀର ବନ୍ଧନେ ଆମାରେ ଯେ ଦେବେ ମୁକ୍ତିବର ?
ଦେଖା ଦାଓ, ଆମ୍ରା ମୋର ଦେହ ଗୃହେ ବିଳମ୍ବ ନା ସୟ ।”
ଉତ୍ତର–ସେ ଯେ ମୋର ପ୍ରିୟ ବନ୍ଧୁ ଲକ୍ଷ୍ମୀନାରାୟଣ
କବିତାକୁ ଦେଇଚି ବାନ୍ଧି ଚିର ପ୍ରିୟ କରି
ଛନ୍ଦହୀନ ଗଦ୍ୟ ପଦ୍ୟ ଭରି ।

ସୁହୃଦ ସ୍ୱାମୀ ବିଚିତ୍ରାନନ୍ଦ
ତା ୨-୧୦-୫୨, ବାରିପଦା ।
( ମୋ ବାରବୁଲା ଜୀବନ-ପୃ ୩୧-୩୨ ପରିଶିଷ୍ଟ)

ତାଙ୍କ 'ଆଶୀର୍ବାଦ' ପଢ଼ି କାନ୍ତକବି ଲକ୍ଷ୍ମୀକାନ୍ତ ମହାପାତ୍ର ତା ୪-୪-୩୮ରେ ଲେଖିଥିଲେ ଉଦ୍‌ଗ୍ରନ୍ଥ–

ଏକ ନିଶ୍ୱାସରେ ଲକ୍ଷ୍ମୀନାରାୟଣଙ୍କ 'ଆଶୀର୍ବାଦ' ପଢ଼ିଗଲି । କବିପ୍ରାଣର ମୁକ୍ତ ଭାବୋଚ୍ଛ୍ୱାସ ବାଧାହୀନ, ବନ୍ଧନହୀନ ହୋଇ ବିଛୁଡ଼ି ପଡ଼ିଛି ଅନର୍ଗଳ । ଭାଷା ମାନି ନାହିଁ ଛନ୍ଦର ନିୟମ, ଯତି ଉପଧାର ବିଧିବ୍ୟବସ୍ଥା, ମିତ୍ରାକ୍ଷରର କାଇଦା କଟକଣା; ବନ୍ୟ ଗିରିନଦୀର ସ୍ୱଚ୍ଛ ଜଳ ସହଜ ସ୍ୱତନ୍ତ୍ର ଅବଲୀଳ ଗତିରେ ଖାଲଢିପ ମାଡ଼ି ତରତର ବହିଯାଉଛି ଆତ୍ମହରା କେଉଁ ଅସୀମର ପଥରେ ।

ଓଡ଼ିଆର ଭାବରାଜ୍ୟରେ 'ଆଶୀର୍ବାଦ' ଏକ ନୂତନ ଅବଦାନ ଏକ ଅଭିନବ ସୃଷ୍ଟି । ପ୍ରତି କବିତାରେ କବିଙ୍କର ଉଦ୍‌ଭ୍ରାନ୍ତ ଅନ୍ତର ଯାଇଛି ମୂର୍ଚ୍ଛା ହୋଇ, ନିଃଶେଷ ଭାବରେ !”

(ମୋ ବାରବୁଲା ଜୀବନ ପୃ ୩୩-୩୪ ପରିଶିଷ୍ଟ)

ଆଉ 'ପରଶ' ପଢ଼ି କବି ରାଧାମୋହନ ଗଡ଼ନାୟକ କ'ଣ ଲେଖିଲେ ତା ୨୫-୧୦-୩୭ରେ ଅନୁଗୋଳରୁ ?

ଆଜି ଲକ୍ଷ୍ମୀନାରାୟଣ ସାହୁଙ୍କ 'ପରଣ' ପଢିବାର ସୁଯୋଗ ପାଇଲି । ମୋର ମନରେ ଅପୂର୍ବ ପରଣଟିଏ ଖେଳିଗଲା । ମୁଁ ଆଶାନ୍ୱିତ ହେଲି ।

'ପରଣ'ର କବିତାଗୁଡ଼ିକ ସମ୍ପୂର୍ଣ୍ଣ ନୂଆ ଧରଣର-ମୁକ୍ତ-କବିତା । ଏଥିରେ ଆଡ଼ମ୍ବର ନାହିଁ, ଚେଷ୍ଟା ନାହିଁ, କସରତ ନାହିଁ । ଛନ୍ଦର ନାଗପାଶ ବନ୍ଧନ ନାହିଁ—ଅଛି କେବଳ ଅନିରୁଦ୍ଧ ଆବେଗ ଓ ଉଚ୍ଛ୍ୱାସ—ପ୍ରାଣର ଛବି ଓ ଧ୍ୱନି, ଯାହା କିଛି କବିତାର ପ୍ରାଣ । ପରଣ ଖାଲି ପରଣ ନୁହେଁ, ପ୍ରାଣେ ପ୍ରାଣେ ରେଖାପାତ କରିପାରିବ ନିଶ୍ଚୟ ।

(ମୋ ବାରବୁଲା ଜୀବନ-ପୃ ୩୩ ପରିଶିଷ୍ଟ )

ତାଙ୍କ ର ବଙ୍ଗଳା କବିତା 'ହୃଦୟପୁଷ୍ପ' ପଢି ପ୍ରସିଦ୍ଧ କବି ଅନ୍ନଦାଶଙ୍କର ରାୟ ଶାନ୍ତିନିକେତନରୁ ତା ୧୭-୪-୫୩ରେ କଣ ଲେଖିଲେ ଦେଖନ୍ତୁ—

ପରମ ଶ୍ରଦ୍ଧାସ୍ପଦେଷୁ,

ଆପଣଙ୍କ ବଙ୍ଗଳା କବିତା ପାଇ ସୁଖୀ ହେଲି । ଆନ୍ତରିକତାରେ ପୂର୍ଣ୍ଣ ଏଇସବୁ ଭକ୍ତି-ରସାଶ୍ରିତ କବିତା ଭଗବାନଙ୍କ ଉଦ୍ଦେଶ୍ୟରେ ଉତ୍‌ସର୍ଗୀକୃତ, ସେ ଗ୍ରହଣ କରିବେ । ମନୁଷ୍ୟର ନିନ୍ଦା, ପ୍ରଶଂସା ତୁଚ୍ଛ । ଭକ୍ତିମାନ୍ ବ୍ୟକ୍ତି ଏଥିରେ ଜଣେ ଅକପଟ ଭକ୍ତଙ୍କର ସଙ୍ଗ ଲାଭ କରିବେ । ଆପଣଙ୍କ ସେବାଧର୍ମୀ ଜୀବନର ନିର୍ମଳ ପୁଷ୍ପ ବଙ୍ଗଳାରେ ଗ୍ରଥିତ ହୋଇଛି । ଏହା ବଙ୍ଗ-ଉତ୍କଳର ଗଭୀରତର ସମ୍ପର୍କ ସୂଚନା ଦେଉଛି । ମୋର ପ୍ରଣାମ ଜାଣିବେ । ।ଇତି।

କୁଶଳପ୍ରାର୍ଥୀ

ଅନ୍ନଦାଶଙ୍କର ରାୟ ।

(ମୋ ବାରବୁଲା ଜୀବନ-ପୃ ୩୧ -ପରିଶିଷ୍ଟ)

ଶ୍ରୀ ସୁବୋଧ ଚନ୍ଦ୍ର ସେନ୍‌ଗୁପ୍ତ ପ୍ରେସିଡେନ୍‌ସି କଲେଜ, କଲିକତାରୁ ଲେଖଛନ୍ତି—

ମାନନୀୟେଷୁ

ଆପ୍‌ନାର 'ହୃଦୟପୁଷ୍ପ' ପଢ଼ିୟା ପ୍ରୀତି ଲାଭ କରିଲାମ୍ । ଇହାତେ ଆପ୍‌ନାର ହୃଦୟେର ଅନେକ ସ୍ୱତଃସ୍ଫୂର୍ତ୍ତ ଅଭିବ୍ୟକ୍ତି ପାଇୟାଛେ । ଆପ୍‌ନି

ଅବାଙ୍ଗାଲୀ ହଇଲେଓ ଭଷାୟ କୋଥାୟ ଜଡ଼ତା ନାଇଁ । ଆପ୍‌ନାର କାବ୍ୟଗ୍ରନ୍ଥେର ବହୁଲ ପ୍ରଚ୍ଚର କାମନା କରି । । ଇତି ।

ଭବଦୀୟ

ଶ୍ରୀ ସୁବୋଧ ଚନ୍ଦ୍ର ସେନ୍‌ଗୁପ୍ତ

(ମୋ ବାରବୁଲ ଜୀବନ-ପୃ ୩୦ ପରିଶିଷ୍ଟ)

ଡକ୍ଟର ସୁନୀତି କୁମାର ଚ୍ଚଟର୍ଜି ତା ୬-୫-୫୩ରେ କଲିକତାରୁ ଲେଖିଥିଲେ—

"I have seen Dr. L. N. Sahu's Bengali book of verses. I am no judge of poetry myself and without giving an opinion as to the literary success of poetical effusions. I think they reveal a sincere spirit of faith and trust in the Divinity and amply indicate a longing for the abiding things in life."

(ମୋ ବାରବୁଲ ଜୀବନ—ପୃ ୩° ପରିଶିଷ୍ଟ)

ତାଙ୍କ ଇଂରେଜୀ କବିତା ପୁସ୍ତକ "Songs of the Hills" ପଢ଼ି ମାଙ୍ଗାଲୋରରୁ ପ୍ରକାଶିତ ସାପ୍ତାହିକ 'The Prabhat' ତା ୨୦.୪.୫୫ରେ ଲେଖିଥିଲେ—

"Mr. L. N. Sahu is a versatile poet in English and is acquainted with the folklore and folk songs of Orissa and adjoining country. He has rendered for the benefit of English knowing public faithful translations of folk songs in chaste, lucid and simple style. His Zeal and ease are remarkable and are a marvel to behold. His subjects are varied—Santali songs, Karama songs, Munda songs, Ganjam songs, Ho songs etc. etc. Translations are superb; the spirit of the Original with regard to fragrance and Odour is

maintained, nay, even heightened. These have a universal appeal, realistic and elevating."

(ମୋ ବାଉବୁଲ ଜୀବନ–ପୃ ୨୬-୨୭ ପରିଶିଷ୍ଟ)

ତାଙ୍କ ଇଂରେଜୀ କବିତା ପୁସ୍ତକ 'The Fountains' ପ୍ରତି 'The Search Light ତା ୨୪. ୫. ୧୯୫୩ରେ ଲେଖିଥିଲେ–

"'The Fountains' is a noteworthy contribution of an Oriya poet, Lakshmi Narayan Sahu, who can rightly claim our appreciation specially for his rhythmical sweetness and lucid expression."

(ମୋ ବାଉବୁଲ ଜୀବନ–ପୃ ୨୮ ପରିଶିଷ୍ଟ)

ତାଙ୍କ 'Springs of the soul' ଓ 'The Fountains' ସମାଲୋଚନା କରି 'The Prabhat' ତା ୨୦. ୪. ୫୫ରେ ମାଙ୍ଗାଲୋରରୁ ଲେଖିଥିଲେ–

"'One who reads these poems is bound to take life full of struggle and disappointment with cheer, for the choice of words in chaste and polished.

The author Dr. L. N. Sahu displays tremendous ingeniousness and gift throughout and has enriched the cultural heritage of India by timely publication. We wish him success; we reccommend the work confidently to all lovers of poetry and folk lore and folk songs."

(ମୋ ବାଉବୁଲ ଜୀବନ–ପୃ ୨୬ ପରିଶିଷ୍ଟ)

ଶେଷ କରିବା ଆଗରୁ ତାଙ୍କର ପଦେ ଇଂରେଜୀ କବିତା ଶୁଣାଯାଉ, ଯୋଉ ଇଂରେଜୀ କବିତା ପାଇଁ ସେ ଏତେ ଯଶ ଅର୍ଜନ କରିଥିଲେ ମାଙ୍ଗାଲୋରରେ, ମହାରାଷ୍ଟ୍ରରେ, ପଞ୍ଜାବରେ, ଆସାମରେ, ଦିଲ୍ଲୀରେ–

'O my sister, O my daughter,
O my Indian mother,
Be dauntless, Be firm in your own faith,
Never mind it the world jeers you and
evils sayeth.

You be firm, Look straight within yourself
And march on, you are your own maker,
none else.

Make or mar – it is you, you alone.
Why then fear others so often ?

× × ×

Ma Durga the slayer of Mahisasura,
Armed and weaponed with many a hand,
To kill the wicked, to save the innocent
So thou, O Indian mother, shalt be stout
and valiant.

March on with courage infinite
With faith in heart invincible and
unconquerable in breast.

× × ×

Mother India produced a Kali too
Who could dance the dance of terrible fear,
Why then O sisters ! are you so frail ?
Onward march, build up your body and mind
Sound, hale and hearty, and beauty find."

(ଲିଙ୍ଗରାଜମହାଶୟଙ୍କ ଗ୍ରନ୍ଥାବଳୀ—ପୃ ୭୦-୭୧ Eng Section-Poesy)

## (ଖ) ତାଙ୍କ ପତ୍ରାବଳୀ :

ଲକ୍ଷ୍ମୀନାରାୟଣଙ୍କର ଗୋଟିଏ ଭଲଗୁଣ ଥିଲା, ସାନବଡ଼ ନିର୍ବିଶେଷରେ ଯିଏ ତାଙ୍କୁ ଚିଠି ଲେଖୁଥିଲା, ସେ ସଙ୍ଗେ ସଙ୍ଗେ ତାଙ୍କୁ ଉତ୍ତର ଦେଉଥିଲେ । କାହାରିକୁ ତୁଚ୍ଛ କରି ଦେଖିବା ତାଙ୍କ ଧାତକରେ ନ ଥିଲା । ପୁଣି ସାନପିଲାଙ୍କୁ ମର୍ଯ୍ୟାଦା ଦେବାକୁ ସେ କର୍ତ୍ତବ୍ୟ ବୋଲି ମଣୁଥିଲେ । ଆଉ ତାଙ୍କ ଚିଠି ଭିତରେ ଏତେ ସ୍ନେହ, ପ୍ରୀତି ଓ କୋମଳତା ଥିଲା, ଯା' ପଢ଼ିଲେ ପେଟ ପୂରି ଉଠୁଥିଲା, ଆଖିରୁ ଝରଝର୍ ଲୁହ ଗଡ଼ି ପଡୁଥିଲା । ଏମିତିକା ଦୁଇଟି ଚିଠିର ନକଲ ଏଠାରେ ଦେଉଛି —ଖାଲି ଦେଖେଇବା ପାଇଁ ଯେ ସେ କେମିତି ଅମୃତର ନିର୍ଝର—ସ୍ନେହ ସାଗରର ଅଥଳ ପାରାବାର । ଖଣ୍ଡିଏ ତାଙ୍କର ସ୍ନେହର ଜଗବନ୍ଧୁକୁ । ଆଉ ଖଣ୍ଡିଏ ଏ ଅଧମ ଲେଖକକୁ, ଯେତେବେଳେ ସେ ମାତ୍ର ନବମ ଶ୍ରେଣୀର ଛାତ୍ର—ଚିହ୍ନା ପରଚ ଜଣାଶୁଣା କିଛି ନାହିଁ ତାଙ୍କ ସହିତ । ପ୍ରଥମଟି—

ସ୍ନେହର ଜଗବନ୍ଧୁ,

ତୁମର ପତ୍ର ପାଇଲି । ବଡ଼ ଖୁସୀ ହେଲି । ପ୍ରତି ଜୀବନରେ ଏତେ କଥା, ଅପରିସୀମ କଥା ଲୁକ୍‌କାୟିତ ଅଛି ଯେ ତାହାର ସନ୍ଧାନ ବଡ଼ ଆନନ୍ଦଜନକ, ବଡ଼ ବିସ୍ମୟଜନକ । ତୁମକୁ ଏତେ ପିଲାଙ୍କ ଭିତରୁ ବାଛିଲି—ଏହା ବିସ୍ମୟଜନକ । ତୁମ ଭିତରେ ନିଶ୍ଚୟ ମୋ ପାଇଁ କିଛି ପ୍ରେରଣାପୂର୍ଣ୍ଣ କଥା, ମସଲା ଅଛି—ତାହା ସାଧାରଣ ନୁହେଁ—ତାହା ଅସାଧାରଣ । ତାହାର ସନ୍ଧାନ ତୁମେ ହୁଏତ ପାଇନାହଁ । ମୁଁ ହୁଏତ ପାଇ ନାହିଁ । ଆଭାସ ମାତ୍ର ପାଇବି—ତୁମେ ଅବା କିଛି କିଛି ପାଉଛ । ଆମ ଜୀବନ ବଡ଼ ରହସ୍ୟମୟ, ବଡ଼ ସୁନ୍ଦର, ପୁଣି ବଡ଼ ଜଟିଳ । ତୁମର ଚିଠି ପଢ଼ି ମୁଁ ଖୁସି ହେଲି । ଭଲ ହେଡ଼ମାଷ୍ଟର ପାଇଛ—ବେଶ୍ ଭଲ କଥା । ପାଠ ପଢ଼, ଜ୍ଞାନ ଅର୍ଜନ କର । କିନ୍ତୁ ସବୁବେଳେ ଆପଣାକୁ ଏହି ସବୁ ଜ୍ଞାନ ଦ୍ୱାରା ଅଧିକରୁ ଅଧିକ ବିକଶିତ କରି ଧର୍ମର ପଥରେ, ନ୍ୟାୟର ପଥରେ ସୌନ୍ଦର୍ଯ୍ୟର ପଥରେ, ମୁକ୍ତିର ପଥରେ ଆଗେଇ ଯାଅ । ମାୟା, ମୋହ ବନ୍ଧନ ମଧୁର ଲାଗେ କିଛି କ୍ଷଣ,

କିନ୍ତୁ ମୁକ୍ତିଠାରୁ ଆଉ ଅଧିକ ସୁନ୍ଦର କଥା କିଛି ଅଛି କି ? ଅତଏବ ଏ ସବୁ ପ୍ରଲୋଭନରୁ, ସବୁ ବନ୍ଧନରୁ ଆପଣାକୁ ମୁକ୍ତ ରଖିବାକୁ ଚେଷ୍ଟା କରିବ, ଜ୍ଞାନର ମାର୍ଗରେ ଉନ୍ନତି କର । ଧର୍ମ, ମଙ୍ଗଳକୁ ଆଶ୍ରୟ କର । ଏହାହିଁ ମୋର ଏକମାତ୍ର ପ୍ରାର୍ଥନା ତୁମ ପାଇଁ । ଅଧିକ କ'ଣ ଲେଖିବି ? ଭଲରେ ରୁହ । ଏକାକୀ ରୁହ ନାହିଁ । ଈଶ୍ୱରଙ୍କ ସହିତରେ ରୁହ । ଜଗନ୍ନାଥ ଦାସଙ୍କ ଭାଗବତ ପଢ଼ିବ । ମୁଁ ଆଜି ପ୍ରଥମ ସ୍କନ୍ଧ ପଢୁଥିଲି । ବଡ଼ ଭଲ ।

—ତା ୨୯-୯-୧୯୪୪

(ମୋ ବାଉବୁଲା ଜୀବନ-ପୃ ୧୯୦-୧୯୧)

ଦ୍ୱିତୀୟଟି :

ଚିଠିଟି ଲେଖିବା ଆଗରୁ ଟିକିଏ ପଛକଥା ଲେଖେ—

୧୯୫୩ । ମୁଁ ପଞ୍ଚମ ଶ୍ରେଣୀରେ ପଢୁଥାଏ । ସେତେବେଳେ କେବଳ ଥରେ ଦେଖିଥିଲି ଲକ୍ଷ୍ମୀନାରାୟଣଙ୍କୁ । କଥାବାର୍ତ୍ତା ନାହିଁ, ପରିଚୟ ନାହିଁ । ସେ କେବଳ ଦଶ ମିନିଟ୍ ପାଇଁ ମୋର ପୂଜ୍ୟ ସେକେଣ୍ଡ ମାଷ୍ଟର ସ୍ୱର୍ଗୀୟ ହରିବଲ୍ଲଭ ଘୋଷଙ୍କ ପାଖକୁ ଯାଇଁ ହସି ବସି, କୋଳାକୋଳି ହୋଇ, କୁଣ୍ଢାକୁଣ୍ଢି ହୋଇ ଫେରିଲେ ।

୧୯୩୯ । ହାଇସ୍କୁଲରେ ନବମ ଶ୍ରେଣୀ । ତଥାପି ପରିଚୟ ନାହିଁ । ଖାଲି ଖଣ୍ଡିଏ ଚିଠିର ବିନିମୟ ।

୧୯୪୨ । ରେଭେନ୍ସା କଲେଜରେ ନାଁ ଲେଖେଇଥାଏ, ଦିନେ ହଠାତ୍ ଦେଖିଲି ପଞ୍ଚହତା ଡେଙ୍ଗା ଦରବୁଢ଼ା ଜଣେ ଖାଲି ଲୁଗା ଖଣ୍ଡେ ପିନ୍ଧି, ଘୁଙ୍ଗୁଡ଼ା ଦେହରେ, ଘୁଙ୍ଗୁଡ଼ା ଗୋଡ଼ରେ ଧୂଳି ସରପଟ ହେଇ, ଝାଳନାଳ ଆଣ୍ଡିଏ ହୋଇ ଦେଉଳସାହିରୁ ଗଲି ଗଲି ଆସି ମିନର୍ଭା ମେସ୍‌ରେ ମୋ ଆଗରେ ଠିଆ । ମୁଁ ସ୍ତମ୍ଭିତ ହେଇ ଘଡ଼ିଏ ରହିଁଲି । ମୁଁ ମେଧାବୀ ଛାତ୍ର ନୁହେଁ । ମୋର ଝଲକ ନ ଥିଲା । ମୋର ଶାଳୀନତା ନ ଥିଲା, କୁଳୀନତା ତ ଦୂରର କଥା । ତଥାପି ଭିକ ଆଶାରେ ଭିକାରୀ ଥରେ ତାଙ୍କ ଦ୍ୱାରସ୍ଥ ହୋଇଥିଲା ବୋଲି ସେ ଯେ ଗଲି ଗଲି ହସି ହସି କାହିଁ ଇଦ୍‌ଗାପଡ଼ିଆରୁ କାହିଁ କଲେଜ ଛକ ଆଗ

ମିନର୍ଭା ମେସ୍‌ରେ ସିଧା ଆସି ଉପସ୍ଥିତ ହୋଇଯିବେ ଖାସ୍ ମୋ'ରି ପାଇଁ, ଏହା ମୋର ସ୍ୱପ୍ନର ଅତୀତ ଥିଲା । ସେ କେତେ ଧନୀ ସନ୍ତାନଙ୍କୁ ହୁଏତ କୋଳ କରୁଥିଲେ । କିନ୍ତୁ ଗରିବ ପାଇଁ, ନିଃସ୍ୱ ପାଇଁ ସେ ନିଜକୁ କିପରି ନିଃଶେଷ କରି ଦେଉଥିଲେ, ତାଙ୍କର ଅଥଳ ସିନ୍ଧୁ କିପରି ଉଦ୍‌ବେଳିତ, ଉଚ୍ଛୋଳିତ ହୋଇ ଉଠୁଥିଲା । ମୁଁ ସେଦିନ ଦେଖିଛି ତାଙ୍କର ଅଶ୍ରୁରେ, ହସରେ, ବାଣୀରେ, ଭଙ୍ଗୀରେ । ମୋ ଭଳି କେତେ ଶତ ଶତ ଚର୍ଚ୍ଚିଆ, ଜୀବଙ୍କୁ, ଅଳିଆ ଟୋକେଇର କାଗଜକୁ ଆଣି ସେ ଯେ ଟେବଲ ଉପରେ ରଖିଛନ୍ତି, ତା ଯେ ଜାଣିଛି, ସେଇ କେବଳ ଜାଣେ ।

ତାଙ୍କର ପ୍ରୀତି, ତାଙ୍କର ସ୍ନେହ, ତାଙ୍କର ହସ, ତାଙ୍କର ଉନ୍ମାଦନା, ତାଙ୍କର ଯୌବନର ଅଗ୍ନି ସରିବାର ନୁହେଁ, ମରିବାର ନୁହେଁ, ତାହା ଅନନ୍ତ, ଅସୀମ, ଅପାର, ଅଫୁରନ୍ତ ।

ସେଇ ଅଥଳ ଅମ୍ବୁଧିର ଗୋଟିଏ ବିନ୍ଦୁ ଏଠି ଉଦ୍ଧାର ନ କରି ରହି ପାରୁନି । ତାଙ୍କର ମୋତେ ପ୍ରଥମ ଚିଠି—

ରାୟଗଡ଼, କୋରାପୁଟ;
ତା ୧୪. ୪. ୪୧

ମମ ସ୍ନେହମୟ ଘାସଫୁଲ,

ତୁମର ସ୍ନେହବୋଳା, ମନଭୁଲା ଲେଖାଟି ପଢି ମୁଁ ତ ଏକାବେଳକେ କବିର ରାଜ୍ୟରେ ଉପନୀତ ହେଲି । ତୁମର ତିକ୍ତତାଟି ପାଇଁ ମୁଁ ଦୁଃଖିତ, ତୁମର ରିକ୍ତତାଟି ହୁଏ ତୁମକୁ ଶୂନ୍ୟର ପଥରେ ନ ନେଇ ପୂର୍ଣ୍ଣର ପଥରେ ନେଇଯିବ । ଦୁଃଖ କରିବ ନାହିଁ । ଜୀବନ ଏହିପରି ଚେତନା ପାଏ । ବେଦନାର ପଥ ଦେଇ ଗଲେ ସେ ମୁକ୍ତି ଲାଭ କରେ, ହର୍ଷଲାଭ କରେ । କ୍ଷଣିକର ପଥ ଛାଡ଼ି ମାନବ ଚିରର ସନ୍ଧାନ ପାଏ ।......କିମଧିକଂ ?

ମମ ମାନସକୁଞ୍ଜେ ଥାଅ ତୁମ୍ଭେ
ଏକୋଇ ପ୍ରିୟଜନ ହେ

ଘାସଫୁଲ ମୁହିଁ ଦେଖି ନ ଥିଲି ଜୀବନେ
ଅନ୍ଧ ଆଜି ପାଇଲା ଲୋଚନ ଯେ
ତୁମ୍ଭେ ସତେ ମୋର ଘାସ ଫୁଲ ହେ ।

ତୁମ୍ଭର
ଲକ୍ଷ୍ମୀନାରାୟଣ ସାହୁ ।

(ମୋ ବାଉଳା ଜୀବନ–ଦ୍ୱିତୀୟ ସଂସ୍କରଣ ପୃ ୨୭୮)

× × ×

ଆଜି ସେହି ଘାସଫୁଲର ଦେବତାଙ୍କୁ ପ୍ରାଣର ସହସ୍ର ପ୍ରଣତି ଜଣାଉଛି ।

□□□